# ଲକ୍ଷ୍ମୀ ପୂଜା

ନମସ୍ତେ କମଳମାଗୋ ସାଗରଦୁଲଣୀ, ନମସ୍ତେ ୨ ଲକ୍ଷ୍ମୀ ବସୁନ୍ଧରଣି
ନମସ୍ତେ କମଳା ମାଗୋ ଅନ୍ନଦୟାବତୀ । ସ୍ଥାବର ଜଙ୍ଗମ କୀଟ ଅନ୍ନପାଳନ୍ତି ॥ ତୋର ଦୟାବଳେ ମାଗୋ ଦରିଦ୍ର ଜନର । ହୁଅଇ ଅଚଳ ବିତ୍ତ ଜିଣଇ କୁବେର ॥ ତୋ ନଦ୍ରୋହ ହେଲେ ମାଗୋ ଅନ୍ନ ନ ମିଳଇ । ପେଟେ ଅରଜିଲେ ମଧ୍ୟ ପେଟ ନ ପୂରଇ ॥ ତୋହର ଚରଣ ମନ ଦେଇ ଯେ ଶୁଣଇ । କି ଅବା ଭକତି ଭାବେ ସର୍ବଦା ପୂଜଇ ॥ ତାହାର ଦରିଦ୍ର ପଣ ଯାଏ ଦୂର ହୋଇ । ସର୍ବଦା ପ୍ରସନ୍ନ ତାକୁ ହେଉ ମହାମାଇ ॥ ବିଷ୍ଣୁ ହୃଦୟେଶ୍ୱରୀ ମାଗୋ ଅଶେଷ ପ୍ରଣାମ । କରୁଛି ପୂରାଅ ବାଳେ ମୋର ମନସ୍କାମ ॥ ତୋ ଚରିତ କହିତ ମୁଁ କରିବ ରଚନ । ଜଗତ ଜନନୀ ତାହେ ଦିଅ ଅବଧାନ ॥ ଦିନେ ଯେ ନାରଦ ପରାଶର ମୁନି ଦୁଇ । ଭ୍ରମି ଭ୍ରମି ଏକ ଗ୍ରାମେ ପ୍ରବେଶିଲେ ଯାଇ ॥ ପ୍ରତି ଘର ଦ୍ୱାର ଗୋମୟରେ ଲିପା ହୋଇ । ଲକ୍ଷ୍ମୀ ପାଦପଦ୍ମ ଚିତ୍ର ପଡ଼ିଥିଲା ତହିଁ ॥ ନାରୀମାନେ ସ୍ନାନସାରି ପିନ୍ଧି ନୀଳବାସ । ଲକ୍ଷ୍ମୀଙ୍କ ପୂଜାରେ ସର୍ବେ ହୋଇଛନ୍ତି ବଶ ॥ ବ୍ରାହ୍ମଣଠାରୁ ଯେ ଚଣ୍ଡାଳ ପର୍ଯ୍ୟନ୍ତେ । ଲକ୍ଷ୍ମୀଙ୍କ ପୂଜାରେ ରତ ଅଛନ୍ତି ସମସ୍ତେ ॥ ହୁଳହୁଳି ଶବଦରେ ପୂରିଛି ଗଗନ । ଦେଖିଏ ଉତ୍ସବଦୃଶ୍ୟ ବିଧାତାନନ୍ଦନ ପଚାରନ୍ତି ପରାଶର ମୁନିଙ୍କି ଉଦାନ୍ତ । କହ ୨ ତପୀବର ଏ କିସ ଚରିତ ॥ ବ୍ରାହ୍ମଣ ଚଣ୍ଡାଳଆଦି ସମସ୍ତ ଜାତିରେ । କରୁଛନ୍ତି କି ଉତ୍ସବ ଅନନ୍ତ ମତିରେ ॥ କେଉଁ ବ୍ରତ କି ଉପାସ ଅଟେ ଏହା ନାମ । କରନ୍ତି କାହାକୁ ପୂଜା ତାର କି ନିୟମ ॥ ଏହା ଶୁଣି ପରାଶର ହୋଇ ହସ ହସ । କହନ୍ତି ବଚନ ଧୀରେ ଶୁଣ ବତ୍ସ ଶିଷ୍ୟ ॥ ଏ ଧାନମାଣିକା ଗୁରୁବାର ଯେ ଅଟଇ ଲକ୍ଷ୍ମୀଦେବୀଙ୍କର ପୂଜା ଏ ବ୍ରତ ଅଟଇ ॥ ସବୁ ମାସମାନଙ୍କରେ ମାର୍ଗଶିର ସାର । ତହିଁରେ ପଡ଼ଇ ଯେଉଁ ୨ ଗୁରୁବାର ॥ ଲକ୍ଷ୍ମୀଙ୍କର ପ୍ରିୟ ସେହି ବାରମାନ ଜାଣ । ସବୁଠାରୁ ଅନ୍ତ ଗୁରୁବାରଟି ପ୍ରଧାନ । ଏକଦିନେ ଶୁକ୍ଳ ଦଶମୀ ଗୁରୁବାର । ପଡ଼ିଲେ ସୁଦଶାବ୍ରତ ହୁଏ ସେ ଦିନର ॥ ଲକ୍ଷ୍ମୀଙ୍କର

ପ୍ରିୟ ଅଟଇ ସେ ବ୍ରତ । ଏକାକଡ଼ ପରାଶର ହୋଇଲେ ମୌନାବ୍ରତ ॥ ପୁଣି ତାହାଙ୍କୁ ପୁଛିଲେ ବ୍ରହ୍ମାଙ୍କ କୁମର । ଲକ୍ଷ୍ମୀବ୍ରତ ଉଦ୍ଧଥିଲା ମର୍ତ୍ତ୍ୟେ କେଉଁ ନର ॥ ତହିଁରୁ ସେ କେଉଁ ଶୁଭଫଳ ଲଭିଅଛନ୍ତି । ଲକ୍ଷ୍ମୀଙ୍କ ଦୋରେହା ହୋଇ କେ ଦୁଃଖ ପାଇଛନ୍ତି ॥ ଏହାସବୁ ମୋ ଅଗରେ କହ ତପୀହାଙ୍କି ॥ ଶୁଣିବାକୁ ତାହା ଚିତ୍ତେ ଶ୍ରଦ୍ଧା ଉପୁଜଇ ॥ ନାରଦ ବଚନ ଶୁଣି ପରାଶରମୁନି କହନ୍ତି ହରଷ ଚିତ୍ତେ ସୁମଧୁର ବାଣୀ ॥ ଧନ୍ୟ ହେ ନାରଦ ତୁମ୍ଭେ ପଚାର କରେଇ । ଲକ୍ଷ୍ମୀବ୍ରତ କଥାରେ ଯେ ହୋଇଅଛ ରତ ॥ କହୁଅଛି ପୁରାତନ କଥା ଅଛି ଯାହା । ହୋଇବ ଆନନ୍ଦ ଚିତ୍ତ ଶୁଣିଲେଟି ତାହା ॥ ଏକଦା ଦିନେ ଜଗନ୍ନାଥ ପାଶେ ଲକ୍ଷ୍ମୀଥିଲେ ॥ କରପତ୍ର ଯୋଡ଼ିଣ ତାହାଙ୍କୁ ଜଣାଇଲେ ଆଜି ମୋ ବାରବ୍ରତ ପଡ଼ିଛି ଗୋସାଇଁ । ତୁମ୍ଭ ଆଜ୍ଞା ହେଲେ ନଗ୍ର ବୁଲିବି ମୁହିଁ ॥ ଗୋବିନ୍ଦ କୋଇଲେ ଲକ୍ଷ୍ମୀ ନଗର୍କୁ ବୁଲିବ । ଦଶମିତ୍ରାଳିଙ୍କ ଆଣ ବେଗେ ସଙ୍ଗେ ଦେବ ॥ ପ୍ରଭୁଙ୍କ ତୁଣ୍ଡରୁ ମାତା ଏମନ୍ତ ଶୁଣିଲେ । ନାନା ସୁବେଶ ହୋଇ ମନ୍ଦିରୁ ବିଜେ କଲେ ॥ ନାସିକାରେ ନବରତ୍ନ ବସଣ ଖଞ୍ଜିଲେ । ଚଉସୋର ରତ୍ନମାଳ କଣ୍ଠେ ଲମ୍ବାଇଲେ ॥ କରରେ ବାହୁଟି ରମ୍ୟ ବଳୟ କଙ୍କଣ । ସୁନାଚିତା ମାଣିକ୍ୟ ଜଡ଼ିତ ଆଭରଣ ॥ ବାଜେଣି ନୂପୁର ମାତା ପାଦରେ ଖଞ୍ଜିଲେ । ଏପରି ନାନା ଭୂଷଣେ ସୁବେଶ ହୋଇଲେ ସେବେଣ ମାତାଙ୍କ ଅଧିକାର ତଳପୁର । ଆଭରଣ କେତେ ମାନ ଦେବା ତୋନ୍ତର ॥ ଶୁଣ ହେ ନାରଦ ଏହା ହୋଇ ଏକଚିତ୍ତ । ବୁଢୀ ବ୍ରାହ୍ମଣୀ ରୂପକୁ ଧରି ଜଗନ୍ମାତା ॥ ପ୍ରବେଶ ହୋଇଲେ ଯାଇ ସାଧବ ଦୁଆରେ । ସାଧବାଣୀ ଉଭା ହୋଇଥିଲା ସେ ଠାବରେ ॥ ତାକୁ ଦେଖି ମହାଲକ୍ଷ୍ମୀ କହନ୍ତି ବଚନ । ଶୁଣ ୨ ସାଧବାଣୀ ହୋଇ ସ୍ଥିରମନ ॥ ଆଜ ପରା ମହାଲକ୍ଷ୍ମୀ ବ୍ରତ ଗୁରୁବାର । ଲିପା ପୋଛା କରି ନାହୁଁ କିମ୍ପା ଘରଦ୍ୱାର । ସାଧବାଣୀ ଏହା ଶୁଣି ପୁଚ୍ଛଇ ସେକ୍ଷଣି । କରୁଛେ ଏ ବ୍ରତ କୁଏ କାହା ପୂଜା ପୁଣି ॥ ବୁଝାଇ ତା ସବୁ କହ ହେ ନାନୀ ଗୋସାଇଁ । ଅଇଲେ ମନକୁ ମୁଁ ସେ ବ୍ରତ କରିବଇଁ ॥ ଏହା ଶୁଣି ପଦ୍ମାଳୟା କହନ୍ତି ସଧୀରେ । ଶୁଣ ସାଧବାଣୀ ବ୍ରତ କୁହୁଏ ଏ ବର୍ଷରେ ॥ ମାର୍ଗଶିର ମାସରେ ଯେ ଆଦ୍ୟ ଗୁରୁବାର । ସେ ଦିନ

ଉଷାରୁ ଶେଯ ଛାଡ଼ି ଉଠିବ ॥ ଗୋମୟ ଜଳରେ ଘର ଦୁଆର ଲିପିବ ।
ଲକ୍ଷ୍ମୀ ଦେବୀ ପାଦପଦ୍ମ ଚିତ୍ରାଙ୍କ ଲେଖିବ ॥ ନୂଆ ମାଣ ଗୋଟିଏ ଅଣାଇ
ହେନୁ ନବରଙ୍ଗ । ଧୋଇ ଧାଇ କରି ତାକୁ ଶୁଖାଇବ ଅଗେ ॥ ତାହାକୁ
କରିବ ନାନାରଙ୍ଗ ଯେ ବିଚିତ୍ର । ଗୃହଜନଙ୍କୁ ବାଟି ଚିତ୍ରା ଲେଖିବ ସମସ୍ତ ॥
ତହିଁ ସ୍ନାନ କରିଅଛି ହୋଇ ସୁଚିମନ୍ତ । ତମ୍ବା ବା ଗଡ଼ୁଲିଏ ଅଣିବ ତ୍ୱରିତ
ତ କୁଙ୍କୁ ଯୋଇ ରଖି ତା ଉପରେ ନୂଆଁ ଧାନ । ରଙ୍ଗ ଭଲ ନୋଟ୍ଟ ହୋଇ-
ଥିବ ଶୁଚି ବର୍ଣ୍ଣେ ତହୁଁ କଣ୍ଠ କୁଟାଇ ଯେ ସେ ନୂଆ ମାଣରେ । ୯ ନ
ମାଣେ ପୁରାଇ ଯେ ରଖିବ ତା ପରେ ॥ ସେହୁ ଧାନ ମାଣର ଉପରେ
ଛନିଗୋଟି । ଗୁଆ ହଳଦ ପାଣିରେ ଧୋଇ ଥୋଇବଟି ॥ ଶୁକଳ ଧାନର
ଶିଷ୍ଟା ଅଣି କ୍ରମେଣା କରି । ସେ ମାଣ ଉପରେ ତାହା ଥୋଇବ ବିଚାରି ॥
ତ୍ରିପୋଷ୍ଟ ମୂଳ କଦଳୀରେ ସଜାଡ଼ିବ । ପଛାଦ ରଙ୍ଗବସନ ପ୍ରଷ୍ଟ ମଣ୍ଡାଇବ
ତହୁଁ ଅହ୍ୱାନ ମହାଲକ୍ଷ୍ମୀଙ୍କି କରିବ । ଗନ୍ଧ ପୁଷ୍ପ ଧୂପ ଦୀପ ଅଦି ସମର୍ପିବ ॥
ପ୍ରଥମରେ ବାଲ୍ୟଭୋଗ ତା ପରେ ସଙ୍କୁଡ଼ି । ଏପରି କରିବ ଛନ ଧୂପଙ୍କୁ
ସଜାଡ଼ି ॥ ମହାଲକ୍ଷ୍ମୀଙ୍କର ଅଜ ଏକାବ୍ରତଅଛି । ସୁଦଶା ବୋଲି ତା ନାମ
ଲୋକେ ପ୍ରଚାରିଛି ॥ ଶୁକଳଦଶମୀ ହୋଇଲେ ଗୁରୁବାର ଦିନ । ଦୁଅଇ ସୁଦଶା
ବ୍ରତ ଶୁଣ ଦେଇ ମନ ॥ ସେଦିନ ଉଷାରୁ ଉଠି ଲିପି ଘର ଦ୍ୱାର ।
ହୋଇଛି ଅଦ୍ଧ ଚିତ୍ରା ଦେବୀ ପଦ ପରକାର ॥ ସ୍ନାନ ସାରି ଗୃହେ ପଦ୍ମ
ମଣ୍ଡଳ ଲେଖିବ । ତହିଁ ପରେ ଧୋଇ ଏକ ଖଟୁଲି ରଖିବ ॥ ତହିଁ ପରେ
ଲକ୍ଷ୍ମୀପୂଜା ଦ୍ରବ୍ୟକୁ ଥୋଇବ । ପଞ୍ଚାମୃତ ଶୁଦ୍ଧଜଳେ ସ୍ନାନ କରାଇବ ॥
ଦଶଖିଅ ସୂତାରେ ଯେ ବ୍ରତଡୋର ଭାଙ୍ଗିବ । ଲକ୍ଷ୍ମୀଙ୍କ ନାମରେ ଦଶଗୋଟି
ଗଣ୍ଠି ଦେବ ॥ ଦଶ ନାଡ଼ି ଦୂବରେ ସେ ଗଣ୍ଠି ଗୁଡ଼ାଇବ । ମହାଲକ୍ଷ୍ମୀ
ଗୁଆପାଖେ ତାହାକୁ ରଖିବ । କହୁଥିଲେ ପୂର୍ବରୁ ସେ ବ୍ରତ ପୁରାତନୀ
ବ୍ରତଡୋର ଅଣି ତହିଁ ଥୋଇବ ବହନି ॥ ପ୍ରଥମରେ ବାଲ୍ୟ ନଇ-
ବେଦ୍ୟ କରି । ତା ପରେ ଯା ଭୋଗ ଦେବ ଶୁଣ ହେତୁକରି ॥ ଅରୁଆ
ଚାଉଳ ଏକମାଣ ଭିଜାଇବ । ତାକୁ କୁଟି ଚୁନାକରି ପତନେ ରଖିବ ॥
କଦଳୀ ନଡ଼ିଆ ଚେନାଦି ଦଶବୁର । ଦେଇ ଦଶ ଗୋଟି ମଣ୍ଡା କରିବ

ସତ୍ୱର । ମହାଲକ୍ଷ୍ମୀଙ୍କି ତା ପୂଜା କରି ଭକ୍ତମତେ । ପ୍ରସାଦ ଖାଇଣ ଦିନ କାଟିବେ ସେ ସୁଖେ ॥ ମହାଲକ୍ଷ୍ମୀ ପ୍ରସାଦ ଯେ ପରକୁ ନଦେବ । ବାସିହୋଇ ଥିବା ଚିଜ ସୁଧା ନ ଖାଇବ ॥ ଏ ଉତ୍ତାରୁ କଥା ଏକ ମନଦେଇ ଶୁଣ । ଗୁରୁବାର ଦିନ ଯେଉଁ କଥା ନିବାରଣ ॥ ସେ କଥା କହୁଛି ଏବେ ସାଧ-ବାଣୀ ଶୁଣ । କେବେ ନ ଭାଙ୍ଗିବ ଖାଇ ଗୁରୁବାର ଦିନ ॥ ଗୁରୁବାର ଦିନ ଯେଉଁ ନାରୀଟି ଅଇଁଠ । ଭୁଞ୍ଜିଲେ ଲେଉଟାଇ କରିବା ନ ପଖାଳେ ତେଣୁ । ଭୁଞ୍ଜିଲେ ଉଚ୍ଛିଷ୍ଟ କରିବା ଲାଗେ ଯେ ତେଲ । ମହାଲକ୍ଷ୍ମୀ ତାର ନିତେଷ୍ଟ ଭାଙ୍ଗି ଛୁଟି ଗଲା ॥ ଗୁରୁବାରେ ଯେଉଁ ନାରୀ ତୃଣକୁ ଛିଣ୍ଡାଇ । ଲଣ୍ଡରେ ଅଇଁଠ ଦେଇ ଯେ ଗ୍ରାସ କରଇ ॥ ଖଟରେ ଗୁଡ଼ାରେ ଯେଉଁ କରଇ ଶୟନ । ଶାଗ ଖାଇଲେ ଦଧିଅନ୍ନ ଯେଉଁରେ ଭୋଜନ ॥ ଯୌବନ୍ଧୁଏ ଯାଇ [illegible] ନାରି [illegible] ଦ୍ୱାରେ । ଭୋଜନ ସମୟେ ଅନ୍ନ ପକାଏ ଭୂମିରେ ॥ ଭୁଞ୍ଜି ନ ପାରଣି ଅନ୍ନ ଫେପାଡ଼ି ଦିଏ । ଏତେକର୍ମ ଯେ କରେ ସେ ଲକ୍ଷ୍ମୀଙ୍କି ନପାଏ ॥ ଗୁରୁ-ବାର ଦିନ ସକାଳରୁ ଗୋମୂତ୍ରରେ । ଦୂର୍ବାରେ ନ ଲିପଇ ଅଳସପଣରେ ଚୁଲିରୁ ନ କାଢେ ପାଂଶ ଝାଡ଼ଇ ଯେ ଅମିତ । ଏମାନଙ୍କ ଠାରେ ଲକ୍ଷ୍ମୀ ଛାଡ଼ନ୍ତି ଯେ ବେଗ ॥ ଧନ ଜନ ତାର ସବୁ ହରଣ କରନ୍ତି । ମାଗି ଚଳିଲ ଅନ୍ନବସ୍ତ୍ର କେହି ନ ଦିଅନ୍ତି ॥ ଗୁରୁବାରେ ଯେଉଁ ନାରୀ ପିନ୍ଧଇ ଶୁକ୍ଳବସ୍ତ୍ର, ଶାଶୁଘରେ ସମ୍ପଦ ତାର ହୁଅଇ ସୁଲଭ ॥ ଗୁରୁବାରେ ଯେଉଁ ନାରୀ ପିଲାକୁ ମାରଇ । କିବା ସାବୁନ୍ତି ଧୋଇ ବଳ [illegible] ଘଷଇ ॥ ସନ୍ଧ୍ୟା ଗଡ଼ିଗଲେ ଯେ ଦିଅଇ ସନ୍ଧ୍ୟାବତୀ । ଧନ ପୁତ୍ର ହାନିହୁଏ ସଦା ଦୁଃଖିତ ॥ ଗୁରୁବାରେ ଯେଉଁ ନାରୀ ଯୋଡ଼ା ଦ୍ରବ୍ୟ ଖାଏ । ଶୋଇବାର ଶଯ୍ୟା ତଳେ କରିଣ ବିଛାଏ ॥ ଶାଶୁ ଶ୍ୱଶୁରଙ୍କୁ ଯେ ନ ମାନଇ ରମଣୀ । ଉଲଗ୍ନ ହୋଇ ସ୍ନାନ କରଇ ଯେ ପ୍ରାଣୀ ॥ ଅମାବାସ୍ୟା ସଂକ୍ରାନ୍ତିରେ ବୃଦ୍ଧ ଏଥ ହଳ । ଏହି ଦିନମାନଙ୍କରେ ଦେଇଲ ତଇଲ ॥ ସଭାରେ ବସିଣ ଯେଉଁ ଜନ ମିଛକହି, ଅଳକ୍ଷ୍ୟ ପାଦ ନଧୋଇ ଯେ ଭୁଞ୍ଜି ବସଇ ॥ କୁଷ୍ମାଣ୍ଡ ଫଳକୁ ଯେଉଁ ରମଣୀ କାଟଇ । ରଜସ୍ୱଳା ନାରୀଙ୍କି ଯେ ରମଣ କରଇ ॥ କନ୍ୟା ଭଗ୍ନୀ ମାସେ ପିତୃ ଶ୍ରାଦ୍ଧ ନ କରନ୍ତି । କଥା କହୁ ? ସବୁବେଳେ ଯେ ହସନ୍ତି ॥

ଏମନ୍ତ ମନୁଷ୍ୟ ସଦା ବଡ଼କଷ୍ଟ ପାଇ । ଅଖ୍ୟା ବୁଦ୍ଧି ନାଶ ହୁଏ ଅନ୍ନ ନ ମିଳଇ ॥ ଗୁରୁବାର ଅମାବାସ୍ୟା ସଙ୍କ୍ରାନ୍ତି ଦିନ । ରଜନୀରେ ସ୍ତ୍ରୀ-ପୁରୁଷ କଲେକ ଭୋଜନ ॥ କିବା ଏହି ତିନିଦିନ ଯେଉଁ ନାରୀ ପୋଡ଼େ । ପୁରୁଷ ସଙ୍ଗତେ ମାଛ ଧର୍ମକୁ ନ ଗୁଣେ ॥ ପ୍ରାଣେ ନାଶ ନ କରଣ ତାକୁ ଦେଖି ଦେଖି । ବୁଲନ୍ତି ଯେ ଅନ୍ନବସ୍ତ୍ର କାହିଁ ନ ମିଳଇ ॥ ଏ ତିନିଦିନରେ ଯେହୁ ତକ୍ରଦ୍ରବ୍ୟ ଖାନ୍ତି । ଅନ୍ତଃକାଳେ ଯମଦ୍ୱାରେ ନାନାଦଣ୍ଡ ପାନ୍ତି ॥ ଏ ତିନିଦିନ ଯେ ନାରୀ କରଇ ଉପବାସ । ଦୁଃଖୀରଙ୍କି ଦେଖି ଦାନ କରଇ ବିଶେଷ ॥ ଘରେ ଲକ୍ଷ୍ମୀଚାଳ ଲକ୍ଷ୍ମୀବାରେ ଉପବାସ । ବଢ଼ାନ୍ତି ତାହାର ଧନ ଜନ ଅପୂରଣ ॥ ସକାଳୁ ଶେଯରୁ ଉଠି ଯେ ମୁଖ ନ ଧୋଏ । ତାମୁଖ ଯେ ଲକ୍ଷ୍ମୀ ଦେଖନ୍ତି ତାର ଶୁଭ ନୁହନ୍ତି ॥ ସଜ ଶେଯ ବାସି ଶେଯେ ଯେ କରେ ଶୟନ । ତା ଗୃହକୁ ପରିତ୍ୟାଗ କରନ୍ତି ବହନ ॥ ଆସନ ବିନା ଯେ ଭୂମି ପିଠେ ବସି ଖାଏ । କିବା ଯେ କୁମାରୀଙ୍କ କରେ କାମ ଯୋଡ଼େ ॥ ଦକ୍ଷିଣ ପଶ୍ଚିମ ମୁହେଁ ଯେ ବସି ଭୁଞ୍ଜଇ । ଏମାନଙ୍କ ଘାଣୁ ଲକ୍ଷ୍ମୀ ଯାନ୍ତି ଦୂରହୋଇ ॥ ସନ୍ଧ୍ୟାରେ ଲୁଣ୍ଠାଏ କେଶବାନ୍ଧେ ଯେଉଁ ନାରୀ । କେବେ ନ ଦେଖନ୍ତି ଲକ୍ଷ୍ମୀ ତାହାର ଯେ ସ୍ତ୍ରୀ ॥ ଭୋଜନ କରି ଯେ ମୁଖ ଶୋଧନ ନ କରେ । ଭୋଜନ କରଇ ଯେହୁ ଅନ୍ଧକାର ଘରେ ॥ ସ୍ନାନପରେ ହୁଅଇ ଯେ ତଇଲ ମର୍ଦ୍ଦନ । କରଇ ଯେ ନଖମୁନେ ଭୂମି ବିଦାରଣ ॥ ଫିଙ୍ଗିଥିବା ଲୁଗାଶେଷେ ଯେ ବସ୍ତ୍ର ହୁଅନ୍ତି । ଏମାନଙ୍କ ବଦନକୁ ଲକ୍ଷ୍ମୀ ନ ଗୁହାଁନ୍ତି ॥ ଯେଉଁ ନାରୀ ନିଜପତି ଠାରେ ସେବାକରନ୍ତେ । ସ୍ୱାମୀ ଯାହା ବୋଲେ ତାହା ନ କରେ ଯେତେବେଳେ ॥ ଚାରମୁଣ୍ଡପରେ ଯେହୁ ଥୋଇଥାଏ ରଜ । ପାସ୍ତୃତ ନୋହୁ ହୁଏ ଯେ ନାରୀ କୁତ୍ସିତ ॥ ଏମନ୍ତ ନାରୀଙ୍କ ମୁଖ ଲକ୍ଷ୍ମୀ ନ ଦେଖନ୍ତି । କାଙ୍ଗାଳିନୀ ହୋଇ ବାରଦ୍ୱାର ସେ ବୁଲନ୍ତି ॥ କଳହୀ ଅଳସୀ ଅତି ଅପ୍ରିୟ ସାହାଗୀ । ଦେବ ଶାସ୍ତ୍ର ଅବଶ୍ୟରେ ନୁହଇ ବିଶ୍ୱାସୀ ॥ ଏପରି ନାରୀ ଯା ଗୃହେ ଥାଇ ସେ ସ୍ମଶାନ । ଲକ୍ଷ୍ମୀ ସେ ସ୍ଥାନକୁ ସଦା କରନ୍ତି ବର୍ଜ୍ଜନ ॥ ଯେଉଁ ନାରୀ ଭକ୍ତିରେ ନ ସେବେ ସ୍ୱାମୀଙ୍କି । ସେହୁ ଜନ୍ମେ ଜନ୍ମେ ହୁଏ ସ୍ୱାମି ଗୃହେ ଦୁଃଖୀ ॥ ଯେଉଁ ନାରୀ ସ୍ୱାମୀଙ୍କ ଦେବତା ସମ ମାନି । ସେବା କରି

ତୋଷ୍ୟ ଥାଏ ତାର ମନ ଚିନ୍ତି ॥ ନିଜ ଅଙ୍ଗ ସଂସ୍କାର କରି ଶୁଦ୍ଧି ହୁଏ । ସ୍ନାନ ଦନ୍ତ ସମସ୍ତଙ୍କ ସମଭାବେ ଗୃହେ ॥ ପରଷିବା ବେଳେ ପଙ୍କ୍ତାଷ ତେ ନ କରେ । ସ୍ୱାମୀ ପୁତ୍ର ସମସ୍ତଙ୍କୁ ଦାନ୍ତ ସମାନରେ ॥ ପତିର ଅଜ୍ଞାକୁ କେବେହେଁ ନ ପକାଏ ତଳେ । ସ୍ୱାମୀ ଦୁଃଖେ ଦୁଃଖୀ ସୁଖେ ସୁଖୀ ହୋଇ ଚଳେ ॥ ଏମନ୍ତ ନାରୀର ଗୃହ ଲକ୍ଷ୍ମୀ ନ ଛାଡ଼ନ୍ତି । ତାର ଦୁଃଖ ନୟନରେ କେବେ ନ ଦେଖନ୍ତି ॥ ଏ ମର୍ତ୍ତ୍ୟମଣ୍ଡଳେ ସେହୁ ବଡ ସୁଖ ପାଏ । ପତି ପୁତ୍ର କନ୍ୟା ଐଶ୍ୱର୍ଯ୍ୟ ଯୁକ୍ତ ହୁଏ ॥ ଅନ୍ତଃକାଳେ ବଇକୁଣ୍ଠେ ଲକ୍ଷ୍ମୀଙ୍କ ସଙ୍ଗତେ, ଅନୁକ୍ଷଣେ ମଜ୍ଜି ରହେ ପ୍ରମୋଦ ରଙ୍ଗତେ ॥ ସଧବା ନାରୀର ପତି ବିନା ନାହିଁ ଗତି । ତପ ଜପ ଦେବପୂଜା ତାହାର ଅମାଚ ॥ ପତିସେବା ଛାଡ଼ି ତୀର୍ଥବ୍ରତ ଯେ କରଇ । ଜନ୍ମଜନ୍ମାନ୍ତରେ ବାଲବିଧବା ହୁଅଇ ॥ ଯେଉଁ ନାରୀ ଅନାଦରେ ଅଛଥି ସେବଇ । ପୁଣ୍ୟବତୀ ବୋଲି ତାକୁ ପୁରାଣେ କହି ॥ ଏମନ୍ତ ପ୍ରକାରେ ଯେତୁ ନାରୀ ବା ପୁରୁଷ । ଆପଣା କୁଳ ଧର୍ମ ନ ଛାଡନ୍ତି ଲେଶ ॥ ସଦାକାଳେ କରନ୍ତି ଉତ୍ତମ ଆଚରଣ । ଲକ୍ଷ୍ମୀ ତାହାଙ୍କର ପାଶ ମିଳନ୍ତି ତକ୍ଷଣ ॥ ପତି ସେବା ବିନା ନାହିଁ ନାରୀଙ୍କର ଗତି । ପତି ପ୍ରାଣ ନାରୀ କରେ ଦେବେ ସେବେ ଗତି ॥ ନାରୀଙ୍କର ତୀର୍ଥ ବ୍ରତ ପତି ସେବା ବିନା । ଅନ୍ୟ ଦେବପୂଜା ତୀର୍ଥ ଯାତ୍ରା ବିଡମ୍ବନା ॥ ଗୁରୁବାରେ ଲକ୍ଷ୍ମୀବ୍ରତ ଯେ ନାରୀ ନ କରେ । ପତି ସେବା ବଇଜ ଯେ ମାତେ ଦେହରେ ॥ ତାହାର ନୁହଇ ଭଲ ଜନମେ ଜନମେ । ଦୁଃଖ ଶୋକ ରୋଗ ଭୋଗି ସଂସାରେ ସେ ଭ୍ରମେ ॥ ଏମନ୍ତ ତ ଅଂର ସାଧବାଣୀଙ୍କି କହିଲେ । ଅଜ୍ଞା ଠାରୁ ଲକ୍ଷ୍ମୀବ୍ରତ କର ତୁ ବୋଇଲେ ॥ ନ କଲେ ସର୍ବ ସମ୍ପଦ ତୋର ସମ୍ପୁ ମିବ । ଏହା କହି ସେ ଠାବରୁ ଚଳିଗଲେ ଜାବ ॥ ଶୁଣ ହେ ନାରଦ ଠ କୁହାଣୀ ଏହା କହି । ସେଠାବରୁ ଟିକିଟିଏ ଦୂର ପଥ ଗଲେ ବାହି ॥ ଘରେ ଘରେ ପୁରେ ପୁରେ ଲକ୍ଷ୍ମୀ ବିଜେ କଲେ । କାହାର ଦୁଆରେ ଯେ ଶଉଚ ନ ଦେଖିଲେ ॥ କେବଣ ପୁରାଣୀ ନିଦେ ହୋଇ ଅଚେତନ । କାହାର ଫିଟି ଯାଇଛି ପିନ୍ଧିଲା ବସନ ॥ କାହାର ଶିରର କେଶ ମୁକୁଳିତ ହୋଇ । ଭୂମି ପରେ ପଡ଼ିଅଛି ଟେକର କେଶ ହୋଇ ॥

ଏହିରୂପେ ମହାଲକ୍ଷ୍ମୀ ଦେଖିଲକ ଗଲେ । ଚଣ୍ଡାଲ ସାହିରେ ଯାଇ ପ୍ରବେଶ ହୋଇଲେ ॥ ଶ୍ରିୟା ଚଣ୍ଡାଲୁଣୀ ନଗ୍ର ବାହାରେ ତା ଘର । ତାହାର ମହିମା ଯେ ଦେବଙ୍କୁ ଅଗୋଚର ॥ ପ୍ରଭାଦାନ ଘରକର ଗୁଣ୍ଡିଶୁଁ ଝାଡ଼ର । ବିଷ୍ଣୁ ଭକତରେ ସେ ଯେ ଅତି ତତପର ॥ ଗାଈ ଦେଳାଘଡ଼ି ଥାଇ ଚଣ୍ଡାଲୁଣୀ ଗଲା । ଏକବର୍ଣ୍ଣ ଗାଈର ସେ ଗୋମୟ ଆଣିଲା ॥ ଉତ୍ତମ କରିଣ ଘର ଦୁଆର ଲିପିଲା । ଚଉଁରାମାଣି ମଧ୍ୟେ ଚୂନାରେ ପକାଇଲା ॥ ଅରୁଆ ଗୁଣ୍ଡ ବାଟି ଘଟରେ ଝୋଟିଦେଲା । ଷୋଳକଠା କରି ଦିବ୍ୟ ପଦ୍ମ କାଟିଲା ॥ ଦଶମୁଖ ଦୀପାବଳି ମଣ୍ଡଳେ ଜାଳିଲା । ମନର ଚଳିଲେକୁଣି ବେଗେ ଚଳି ଗଲା । ଉଅଗୁଜଳ ଦଣ୍ଡେ ଦୂବ ଦଶଟିକର । ତାହା ନେଇ ଚଣ୍ଡାଳୁଣୀ ମଣ୍ଡଳେ ଥୋଇଲା ॥ ଧୂପ ଦୀପ ନଇବେଦ୍ୟ ଗନ୍ଧ ପୁଷ୍ପ ଦେଲା । ଲକ୍ଷ୍ମୀ ନାରାୟଣ ବୋଲି ସୁମରଣା କଲା ॥ ନମସ୍ତେ ୨ ମାଗୋ ହରିଙ୍କ ଘରଣୀ । ମୁହିଁ ସ୍ଥିର ହୀନଜାତି ନ ଜାଣଇ ପୂଜି ॥ ଚଣ୍ଡାଲ ସାହିରେ ଘର ପୁଣି ଚଣ୍ଡାଲୁଣୀ । କାହିଁକି ଭକତି ମୋର ଘେନ କମଳିନୀ ॥ ଦାଣ୍ଡେ ୨ ଯାଉ ଥିଲେ ବିଷ୍ଣୁ ପାଟରାଣୀ । ସହି ନ ପାରିଲେ ଚଣ୍ଡାଲୁଣୀର ଦଇନ ॥ ପଦ୍ମ ଫୁଲ ଦେଖି ତାଙ୍କ ଜଳିଲା ଶରଧା । ଦୁଇପାଦ ଦେଇ ମାତା ପଦ୍ମେ ହେଲେ ଉଭା ॥ ଚଣ୍ଡାଲୁଣୀ ଘରେ ଛାଟି ପାଇଲେକ ଶୋଭା । ଲକ୍ଷ୍ମୀ କହନ୍ତି କି ଉପମା ଦେବା ॥ ବୋଇଲେ ସେ ଚଣ୍ଡାଳୁଣୀ ମାଗି ନେଉ ବର । ପ୍ରସନ୍ନ ହୋଇଲି ଦୁଃଖ ନାଶିବ ତୋହର ॥ ଚଣ୍ଡାଲୁଣୀ କହୁଅଛି ଶିରେ କର ଦେଇ । କି ବର ମାଗିବ ମାତ ମାଗି ନ ଜାଣଇ ॥ ଯେ ଗମ୍ଭୁକୁ ଦେବୁ ମୋର ଲକ୍ଷେପଦ୍ମ ଗାଈ । କୁବେରର ସମାନ ଧନ ଦେବୁ ମାତଃ ତୁହି ॥ କୋଳକୁ ନନ୍ଦନ ଯେ ହସ୍ତକୁ ସୁନାବାହି । ଗୁରୁ ସୁରେ ବସିବ ଅମର ପଦ ପାଇ ॥ ଲକ୍ଷ୍ମୀ ଶୁଣି ବୋଇଲେ ତୁ ହୋଇଲୁକି ବାଇ । ଏ ସମସ୍ତ ବର ତୋତେ ଦେଇତି ପାରଇ ॥ ଅମର ବର ଦେବାକୁ ଶକ୍ତି ନାହିଁ ମୋର । ଏଥି ବର ମାଗିଲୁ ତୁ କେମନ୍ତ ପ୍ରକାର ॥ ଯେତେ ଦିନ ଜୀଇଁଥିବୁ ଐଶ୍ୱର୍ଯ୍ୟ ଭୁଞ୍ଜିବୁ । ଅନ୍ତଃକାଳେ ଯାଇ ବିଷ୍ଣୁ କୋଳରେ ବସିବୁ ॥ ମୋହର ଏ ବ୍ରତ କରୁଥିବୁ ସବୁ ଦିନ । ଲକ୍ଷ୍ମୀ ନାରାୟଣ ପାଦେ ଥିବ

ତୋର ମନ ॥ ଶୁଣ ହେ ନାରଦ ଏମନ୍ତ ହରି ବଳରାମ । ମୃଗୟାବନୋଦେ ଯାଇଥିଲେ ଘୋରବନ ॥ ଯୋଗବଳେ ବଳରାମ ଏକଥା ଜାଣିଲେ । ତାଙ୍କ ଭାଇ ଶ୍ରୀହରିଙ୍କି ଏମନ୍ତ କହିଲେ । ଦେଖ ୨ କହ୍ନାଇ ତୋ ଭାରିଯା ଅଗ୍ରର ଜନ୍ମହୋଇ ଅଛଇ ଯେ ଚଣ୍ଡାଳୁଣୀ ଘର ॥ ହାଣ୍ଡିଶାଳେ ଥିବ ଲକ୍ଷ୍ମୀ ପାଣି ଘରେ ଥିବ । ସ୍ନାନ ନ କରି ସେ ବଡଦେଉଳେ ପଶିବ ॥ ଏହିରୂପେ ସବୁ ଦିନେ ଦେଉଳେ ପଶୁଛି । ଦୁଇତୋଟି ଭାଇଙ୍କି ସେ ବାଟାଳ କରୁଛି ॥ ଦାବଦ୍ରଇଞ୍ଜନୀ ନାମ ଯେଶୁଅଛି ବହି । ଦଇଦ୍ରମାନଙ୍କ ଭକ୍ଷ୍ୟ ନ ପାରଇ ସହି ସୁଦଶା ନାମରେ ଏତବ୍ରତ ଯେ ତାହାର । ଏହିବ୍ରତେ ଚଣ୍ଡାଳୁଣୀ ପୂଜଇ ଘନ୍ତର ॥ ଭାରିଯାରେ ବାନ୍ଧି ଯେତେକ ଅଛିରେ କହ୍ନାଇ । ଚଣ୍ଡାଳ ସାହିରେ ଘର ତୋଳ ଦେବେଗେଯାଇ ॥ ଅନ୍ନବାକଂମାନ ତାକୁ ଦେଅପଠାଇ । ପବିତ୍ର ଘରଣୀ ଥିଲେ ଅଲଗଢ ନାହିଁ । ଗୋବିନ୍ଦ ବୋଇଲେ ଭାଇ ଘଉଡଇ ଦେବା । ଲକ୍ଷ୍ମୀପିରିୟ ଭାରିଯାକୁ ଆଉ ନ ପାଇବା ॥ ସେ ଯେତେକ ଦୋଷ କରନ୍ତି ଏମନ୍ତ କରବା । ସ୍ୱର୍ଗ ପୁର ଲୋକଙ୍କୁ ହକାର ଅଣାଇବା ॥ ଗାଈ-ଲଷ ଠେଙ୍ଗା ଦେଇ ଜାତ ଭାରାଇବା । ଅଇବେଳେ ତାର ଯଦି ଅମୀତ ଦେଖିବା ॥ ଦେଉଳ ଭିତରୁ ତାକୁ ଦେବା ଘଉଡାଇ । ଏ କଥା ପ୍ରମାଣ ଗୁଟିଏ ଶୁଣ ଜ୍ୟେଷ୍ଠ ଭାଇ ॥ ନଜାଣି ଯେ ଦୋଷକଲେ ସିନ୍ଧୁସୁତା କ୍ଷେମା । ବାରେ ମାତ୍ର ଭାଇ ତାଙ୍କ ଦୋଷ କରକ୍ଷମା ॥ ବଳରାମ ବୋଲୁଛନ୍ତି ଶୁଣ ଭାବଗ୍ରାହୀ । ତୋର ଲକ୍ଷ୍ମୀଥିଲେ ମୁହିଁ ରହିବଇଁ ନାହିଁ ॥ ଭାରିଯା ଅଟଇ ସିନା ପାଦର ପାଣ୍ଠୋଇ । ଭାଇଥିଲେ କୋଟି ଭାର୍ଯା ମିଳଯେ ପାରଇ ॥ ଭାର୍ଯା ଠାରେ ଲୋଭ ଯେତେକ ଅଛିରେ କହ୍ନାଇ । ଚଣ୍ଡାଳ ସାହିରେ ତୁ ନଅର ତୋଳ ଯାଇ ॥ ମୋର ବଡଦେଉଳକୁ ଆଉ ନ ଆସିବୁ । ମାଇ-ପକୁ ଘେନି ଗ୍ରାମ ବାହାରେ ରହିବୁ ॥ ଧିକ୍କାର ବଚନ ପ୍ରଭୁ ସହି ନ ପାରିଲେ । ଛଡଲ ବୋଲିଣ ରଙ୍ଗ ଅଧରେ କହିଲେ ॥ ଦେଉଳର ସିଂହ ଦ୍ୱାରେ ପ୍ରବେଶ ହୋଇଲେ । ଉର୍ଦ୍ଧ୍ୱମୁଖ ହୋଇ ପ୍ରଭୁ ନିଶ୍ୱାସ ଛାଡିଲେ ॥ ଶୁଣି ହେ ନାରଦ ଦେଖେ ଶ୍ରୀୟା ଚଣ୍ଡାଳୁଣୀ । ପୂଜା କରୁଥିଲା ଲକ୍ଷ୍ମୀଙ୍କର ପାଦ ବେନି ॥ ତାହାର ପୂଜାରେ ଦେବୀ ସନ୍ତୁଷ୍ଟ ହୋଇଲେ । ଧାରଣ

ଅନେକବର ପ୍ରଦାନ ଯେ କଲେ ॥ କୁଷ୍ଠିର ଶରୀର ଥିଲା ଗନ୍ଧସ୍ୱର ବାସ, ଲକ୍ଷ୍ମୀ ଦୟାହେଲେ ତାକୁ ଚନ୍ଦନଉଆସ ॥ ଯେଉଁ ଚଣ୍ଡାଳୁଣୀ ଘରେ ନଥି-ଲାକ ଅନ୍ନ । ଶ୍ରୀର କୋଟିଶ ଦେଲେ ତାକୁ ଶୁଦ୍ଧ ଯେ ସୁବର୍ଣ୍ଣ ॥ ଯେଉଁ ଚଣ୍ଡାଳୁଣୀ ଘରେ ନଥିଲା କ ପୁତ୍ର । ଲକ୍ଷ୍ମୀ ଦୟାକଲେ ତାର ହେଲେ ପଞ୍ଚ-ପୁତ୍ର ॥ ଧନ ପୁତ୍ରବତୀ ହୁଅ ବୋଲିଣ ବୋଇଲେ ॥ ବରଦେଇ ସେଠା-ବରୁ ବିଜେକରି ଗଲେ ॥ ଲକ୍ଷ୍ମୀହେତୁ ଚଣ୍ଡାଳୁଣୀ ହେଲା ଭାଗ୍ୟବତୀ । ଏବେ ଶୁଣ ହେ ନାରଦ ଅପୂର୍ବ ଭାରତୀ ॥ ସିଂହ ଦୁଆରେ ବିଜୟ ଲକ୍ଷ୍ମୀ ମହାମାୟୀ । ଦେଖିଲେ ଦୁଆରେ ବସିଛନ୍ତି ବେନିଭାଇ ॥ କୋଇଲେ ହେ ବ୍ରାହ୍ମଣ ଭିତରକୁ ଯିବ । ଦଶମୀ ଯୋଗାଡ ମୁହିଁ ମନେଶାନ୍ତି ଗ୍ରହିବ ॥ ଗୋବିନ୍ଦ ବୋଇଲେ ଲକ୍ଷ୍ମୀ ହୋଇଲୁ କି ବାଇ । ଚଣ୍ଡାଳସାହିକି ଯାଇଥିଲୁ କାହିଁ ପାଇଁ ॥ ଆମ୍ଭେ ନ ଦେଖୁଣୁ ଯେ ଦେଖିଲେ ଜ୍ୟେଷ୍ଠ ଭାଇ । ଆମ୍ଭେ ଦେଖିଥିଲେ ସିନା ଦିଅନ୍ତୁ ଘୋଡାଇ ॥ ଯାଅଲକ୍ଷ୍ମୀ ତୁମ୍ଭରେ ଗୋ ଅଜ୍ଞାର୍ଯ୍ୟ ନାହିଁ । ଧିକ୍କାର ବହୁତ ମୋତେ କଲେ ବଡଭାଇ ॥ ହାଣ୍ଡିଦ୍ୱାରେ ଥିବ ଲକ୍ଷ୍ମୀ ଥିବ ପାଣିଦ୍ୱାରେ । ସ୍ନାନ ନକରି ପଶୁଛୁ ଦେଉଳ ଭିତରେ ॥ ତୋ ଠାରୁ ପାପିନୀ ଅଉ ସଂସାରରେ ନାହିଁ । ମୋହର ବଚନ ଏବେ ଶୁଣ ପ୍ରାଣ ସହି ॥ ଜଗତେ ଓଳାଳୁ ମୋତେ ବାଇ ଠାକୁରାଣୀ । ବାଇପ୍ରାପ୍ତ ବୁଲୁ-ଥାଉ ହୋଇ ମୋ ଘରଣୀ ॥ ଏକଘର କରିଉ ସହସ୍ରଘର ଭାଙ୍ଗି । ସହସ୍ର ଘର କରିଉ ଏକଘର ଭାଙ୍ଗି ॥ ଏମନ୍ତ ପ୍ରକାରେ ଲକ୍ଷ୍ମୀ ମହିମା ତୋହର । ଯାଅ ଏବେ ବାହାର ଗୋ ନଥାଅ ମୋ ଘର ॥ ତଠାରେ କୋପ ଯେ କଲେ ଅମ୍ଭ ଜ୍ୟେଷ୍ଠଭାଇ । ଲକ୍ଷ୍ମୀଦେବୀ କହୁଛନ୍ତି ଠାକୁରଙ୍କୁ ଚାହିଁ ॥ ଛଡପତ୍ର ଦେଇ ମୋତେ ଦିଅ ଘଉଡ଼ାଇ । ଜଗନ୍ନାଥ କହୁଛନ୍ତି ଲକ୍ଷ୍ମୀମୁଖ ଚାହିଁ ॥ ଅନ୍ତ କାଳରେ ଗୋ ଛଡପତ୍ର ଦେଲେ ନାହିଁ । ଛଡବା ଭାର୍ଯ୍ୟାର ମୁଖ ଚାହିଁ ନ ଯୋଗାଇ ॥ ଲକ୍ଷ୍ମୀଦେବୀ କହୁଛନ୍ତି ଠାକୁରଙ୍କୁ ଚାହିଁ ଯେତେବେଳେ ସାଗର ମନ୍ଥିଲ ପ୍ରଭୁ ଯାଇ ॥ ବେଦମନ୍ତ୍ରାଦି ସହିତ ମୋତେ ଯେ ପାଇଲ, ସେତେ ବେଳକଥା କି ହେ ପାଶୋରିଣ ଦେଲ ॥ ମୋରପିତା କରୁଣ ଯେ ତୁମ୍ଭଙ୍କୁ ବରିଲ । କନକବେଦୀରେ ନେଇ ବାହା କରାଇଲ ॥ ଛିଅ ଦେଇ ଶରଣ

ପଣ୍ଡିଆ ତୁମ୍ଭଙ୍କୁ । ଦଣ୍ଡଦୋଷ କ୍ଷମା ମୋର କରିବାର ପାଇଁ ॥ ଦଶଗୋଟି ଦୋଷରୁ ଗୋଟିଏ ନ ସହିଲ । ପ୍ରଥମରେ ଚଣ୍ଡାଳୁଣୀ ବୋଲି ଗାଳିଦେଲ ବିଷ୍ଣୁ ବାସିଦିନ ଯୁଅ ଖେଳିବାର ଦେଲେ । ସାତମୁଠି କଉଡ଼ି ଯେ ପକା-ଇଲ ତଳେ ॥ ତୁମ୍ଭେ ଥାଳିଧରି ନାଥ ମୋହର ହସ୍ତରେ । ସୁବର୍ଣ୍ଣ କଉଡ଼ି ମୁହିଁ ସାଜିଲଇଁ କରେ ॥ ଛଡ଼ାଇ ନପାରି ତୁମ୍ଭେ ବ୍ରହ୍ମାଣ୍ଡଠାକୁର । ମୋତେ ଦେଇଲ ଯା ଇଚ୍ଛା ମାଗିନେବ ବର ॥ ଯାହା ମନେ ବାଞ୍ଛା ଗୋ କରିବୁ ବହିଦେହି । ତାହାମୁଁ ଅବଶ୍ୟ ଦେବ ଶୁଣ ପ୍ରାଣସହି ॥ କରପଦ ଯୋଡ଼ିଣ ମୁଁ ବୋଇଲି ଉତ୍ତର । ସାବଧାନ ହୋଇ ଶୁଣ ବ୍ରହ୍ମାଣ୍ଡ ଠାକୁର ॥ ଅଷ୍ଟ ଦିନେ ପଡ଼ିବ ମୋହର ଗୁରୁବାର । ପଣ୍ଡା ଚରଚିବ ମୁହିଁ ସବୁଙ୍କର ଘର ॥ ପଣ୍ଡା ଚରଚିବ କାଠ ବ୍ରହ୍ମ ପରିଯନ୍ତେ । ଏହିଦୋଷ ମୋର ପ୍ରଭୁ ନ ଧରିବ ଚିତ୍ତେ ॥ ହେଉବୋଲି ଶ୍ରୀମୁଖରେ ଅଛ ଅଜ୍ଞାଦେଇ । ଏବେ କିମ୍ପା ସତ୍ୟ ଭଗ୍ନ ହେଉଛ ଗୋ ସାଇଁ ॥ ଜଗନ୍ନାଥ କାହ୍ନୁଛନ୍ତି କୋପଭର ହୋଇ । ବାପ ତ ଲକ୍ଷ୍ମୀ ଯେ ଗରଜି ମରୁଥାଇ ॥ ଝୀଅ ଠେଙ୍ଗି ତୋ ଦୁର୍ଗୁଣ କହିଲେ ନ ସରେ । ବାପାର ଗର୍ଜିବା ଶବ୍ଦ କିଏ ରହିପାରେ ॥ ଗୁରୁପାଖେ ମେଘନାଦ ପାଚେରି ତୋଳାଇ । ବଡ଼ ଦେଉଳରେ ରହିଅଛୁ ଦୁଇଭାଇ ॥ ମହାଲକ୍ଷ୍ମୀ ବୋଲୁଛନ୍ତି ଠାକୁରଙ୍କୁ ରୁହି । ଅଛୁଆଘରରେ ଉତ୍ପନ୍ନେଥିଲ ଜନ୍ମ ହୋଇ ॥ ଅଛୁଆ ବଢ଼ାଳ ବୋଲି ଦେଇ ଘଉଡ଼ାଇ । ପୁଣି ଜାତି କୁଳ ଗୋପ କହିଲ ଗୋସାଇଁ ॥ ପ୍ରଭୁହେତୁ ସବୁ ଯାଉଅଛି ଗୋପ୍ୟହୋଇ । ତୁମ୍ଭ ଜାତିକୁଳର ତ ଠିକଣା ନଥାଇ ॥ ତୁମ୍ଭ ଜାତି କୁଳ ଯେ କହିଲେ ନ ସରଇ । ଗଉଡ଼ ଘରେରହିଲ ଦୁଇଗୋଟି ଭାଇ ॥ ନାମାନାମେ ସିପୁଟି ଯେ ଜାତିରେ ଗୋଲ୍ଲ ତାହାଘରେ ଜଗନ୍ନାଥ କଲ ଅନ୍ନ ଭକ୍ଷ ॥ ଦୁତ ପଣେ ଯାଇଥିଲ ହସ୍ତିନା ଭୁବନ । ବିଦୁର ଘରରେ ପୁଣି କରିଲ ଭୋଜନ ॥ ଜାରାନାମେ ଶବରଯେ ଅରଣ୍ୟରେ ଘର । ସେ ତୁମ୍ଭଙ୍କୁ ପୂଜିଲ ବରଷାଦଶବାର । ଅରଣ୍ୟରୁ ଫଳ ମୂଳ ଗୋଟାଇଣ ଆଣଇ । ବସିଣ ପ୍ରଥମେ ଫଳମୂଳ ସେ ଚାଖଇ ॥ ପିଠା ଭିକ୍ଷା ସବୁ ପ୍ରଭୁ ଅଙ୍ଗୀକାର ଦେଇ । ଯେଫଳ ସୁଆଦ ତାହା ତୁମ୍ଭଙ୍କୁ ଭୁଞ୍ଜାଇ ଶବର ବିଟାଳ ତୁମ୍ଭେ ଦେବଗୋଟି ଭାଇ । ଏକଥା କି ତୁମ୍ଭମନୁ ଅଛ ଭୁଲି

ଯାଇ ॥ ଅପଣ ଯାଡ଼କା ତୁମ୍ଭେ ପରେ ନିନ୍ଦା କର । ପାପ ପୁଣ୍ୟ ଦୁଇ କଥା ବିଚାର ନକର ॥ ଭୁଞ୍ଜିବା ବେଳଦେଲ ପତି ତା ସହଇ । ଏକ ଅପରାଧେ ପ୍ରଭୁ ଭୃତ୍ୟେ କା ତେଜଇ ॥ କ୍ଷମା ନକର ଗୋସାଇଁ ଏମନ୍ତ ବିଚାର । ଯାଅ ୨ ବୋଲିଅଛ ମୋତେ ବାର ବାର ॥ ଜଗନ୍ନାଥ କହୁଛନ୍ତି -ଏମନ୍ତ କହିବୁ । ମାଣେ ୬ ପଡ଼ ନୈବେଦ୍ୟ ମୋତେ ଦେଉଥିବୁ । ଭାଇଙ୍କ ବୁଝ କ ପଛେ ତୁମ୍ଭଙ୍କୁ ଅଣିବୁ । ଭାଇଙ୍କ ଆଜ୍ଞା ଅବଜ୍ଞା କେବେ ନ କରିବୁ ॥ ଲକ୍ଷ୍ମୀ ଦେବୀ କହନ୍ତି ପଡ଼ରେ ଦାସୀ ନାହିଁ । ଅନାଥ ଅରକ୍ଷ ପ୍ରାୟେ ଯାଉ ଅଛୁ ମୁହିଁ ॥ ଚଣ୍ଡୀ ଅଲକ୍ଷଣୀ ହୋଇ ମୁହିଁ ତ ନୁହଇ । ପିତାର ଘରକୁ ମୁଁ ଯେ ବାହାର ହିଇ ॥ ତୁମ୍ଭ ଅଲଙ୍କାରମାନ ପ୍ରଭୁ କାଢ଼ି ନିଅ । ପଛରେ ମତେ ଯେ ଅଉ ବୋଲଣା ନ ଦିଅ ॥ ଗୋବର୍ଦ୍ଧନ ବୋଇଲେ ଲକ୍ଷ୍ମୀ ହୋଇଲୁ କି ବାଇ । ଅଲଙ୍କାରମାନ ଅମ୍ଭେ ନେବୁ କାହିଁ ପାଇଁ ॥ ଭର୍ତ୍ତାର ଦେହେ ଯେଉଁ ଅଲଙ୍କାର ଥାଏ । ସ୍ୱାମୀ ହୋଇ ତାହାଠାରୁ କାଢ଼ିଣ କି ନିଏ ॥ ଠାକୁରାଣୀ କହୁଛନ୍ତି ଶ୍ରୀମୁଖକୁ ଗୁହିଁ । ତୁମ୍ଭର ଅଟେ ମୁଁ ଯେ ପ୍ରଥବବାହ ପଛରେ କହିବ ଲକ୍ଷ୍ମୀ ଅମ୍ଭଘରେ ଥିଲା । ସହସ୍ର ଟଙ୍କାର ଅଲଙ୍କାର ଘେନି-ଗଲା ॥ ଏମନ୍ତ ଅକ୍ଷତ ମୋତେ ନ ଦିଅ ଗୋସାଇଁ ତୁମ୍ଭ ଅଲଙ୍କାରମାନ ନିଅ ବାହୁଡ଼ାଇ ॥ ଶିରରୁ କାଢ଼ିଲେ ଲକ୍ଷ୍ମୀ ମୁକ୍ତାହାର ଝାଲି । ହୃଦରୁ କାଢ଼ିଲେ ଇନ୍ଦ୍ର ଗୋବର୍ଦ୍ଧନ କାନ୍ଥିଲ ॥ ଅଣ୍ଟାରୁ କାଢ଼ିଲେ ମାଏ ରତ୍ନ ଓଢ଼-ଅଣୀ । ନାସିକାରୁ କାଢ଼ିଲେ ଯେ ମୁକ୍ତା ଦସଣୀ ॥ ଦୁଇକର୍ଣ୍ଣରୁ କାଢ଼ିଲେ ହୀରାର କୁଣ୍ଡଳ । ଗଳାରୁ କାଢ଼ିଲେ କୋଷର ଚନ୍ଦ୍ରମାଳ ॥ ପାଦରୁ କାଢ଼ିଲେ ଦେବୀ ବାଜେଣି ନୂପୁର । ଅଙ୍ଗୁଳିରୁ କାଢ଼ିଲେ ଯେ ମୁଦିଅ ଓଡ଼ର ॥ ଅନ୍ୟ ଅଲଙ୍କାରମାନ କି କହିବି ଅନ୍ତ । ରୁଣ୍ଡ କଲରୁ ଦିଶିଲା ସବୁ ଦାଉ ଦାଉ ॥ ସବୁ ଅଲଙ୍କାରମାନ ଏକ ଠାବ କଲେ । ରଖ ଘେନ ବନ୍ଧୁ ଏହା ବୋଲି ସମର୍ପିଲେ ॥ ଗୋବର୍ଦ୍ଧନ ବୋଲନ୍ତି ଏହା କି କରିବୁ ନେଇ । ଅମ୍ଭର ଏ ଅଲଙ୍କାର ପ୍ରୟୋଜନ ନାହିଁ ॥ ଗୃହରୁ ହୋଇଣ ଯେବେ ଘର୍ଷିକୁ ଯାଉଇ । ଛ, ମାସକୁ ଭାତ ଲୁଗା କେଉଁଠି ପାଇବ ॥ ଏହି ଅଲ-କାର ସବୁ ତୁମ୍ଭେ ଘେନିଯାଅ । ବିକି ଖଞ୍ଜି କର ଭାତ ଲୁଗା କରୁଥାଅ ॥

ଲକ୍ଷ୍ମୀଦେବୀ କହୁଛନ୍ତି ପ୍ରଭୁ ମୁଖ ଚୁମ୍ବି । ସାବଧାନ ହୋଇ ଶୁଣ ବୃତ୍ତାନ୍ତ ଗୋସାଇଁ ॥ ମୋହର ଭୁଲ ଆଜଯେଉଁ ଭାର୍ଯା ଅଣିବ, ଏହିସବୁ ଅଳଙ୍କାର ତାହାକୁ ଯେ ଦେବ ॥ ମୁହିଁ ଯାଉଅଛି ହୀନ ଅଲକ୍ଷଣୀ ହୋଇ । ମୋହର ବଚନ ଏବେ ଶୁଣ ଭାବଗ୍ରାହୀ । ସତ୍ୟ ଯେବେ ଚଣ୍ଡ ସତୀ ହୋଇନ୍ତି ଅତ ଯାତ । ତୁମ୍ଭଙ୍କୁ ଅନ୍ନ ନମିଳୁ ଅହେ ଜଗନ୍ନାଥ ॥ ବାରବର୍ଷ ଯାଏ ତୁମ୍ଭେ ଦରିଦ୍ର ହୋଇବ, ଅନ୍ନବସ୍ତ୍ର ଜଳ ଓଡ଼ ତୁମ୍ଭଙ୍କୁ ନ ମିଳିବ ॥ ମୁହିଁ ଚଣ୍ଡାଳୁଣୀ ଯେବେ ନୈବେଦ୍ୟ ଅନ୍ନ । ଭୋଜନ କରିବ ତୁମ୍ଭେ ବାଳିଗୁଞ୍ଜନ ଏତେକହିବାରୁ ଲକ୍ଷ୍ମୀଦେବୀ ଖାପଦେଇ ଗଲେ । ଦେଉଳୁ ବାହାର ହୋଇ କେତେଦୂର ଗଲେ ॥ ଏହାଦେଖି ଦାସୀମାନେ ସଙ୍ଗେ ଗୋଡ଼ାଅନ୍ତି, ଦାସିଙ୍କୀ ଚୁମ୍ବି ଲକ୍ଷ୍ମୀଦେବୀ କହୁଛନ୍ତି ॥ ମୁହିଁ ଯାଉଅଛି ହୀନ ଅଲକ୍ଷଣି ହୋଇ ମୋହପାଛେ ତୁମ୍ଭେମାନେ ଆସୁଛ କିମ୍ପାଇଁ ॥ ଏହିପରି ହୋଇ ଯେବେ ପିତା ଘର ଯିବ । ଗୁହାଦାନ ମାଗି ତହିଁ ରହି ନ ପାରିବ ॥ ଜଗନ୍ନାଥ ପ୍ରାଣବନ୍ଧୁ ପିତାଘର ଯିବେ । ତାଙ୍କୁ ଦେଖି ପିତା ଯୋଗେ ସମର୍ପିଣ ଦେବେ ॥ ଶାପ ଦେବାଫଳ ମୋ ହୋଇବ ଅକାରଣ । ଦରିଦ୍ର ନୋହିବେ ପ୍ରଭୁ ଶ୍ରୀଦେବ ଭଗବାନ ॥ ଏତେବେଳେ ଲକ୍ଷ୍ମୀଦେବୀ ମନେ ଚିନ୍ତା କଲେ । ବିଶ୍ୱକର୍ମାକୁ ଯେ ମାଏ ମନେ ସୁମରିଲେ ବୈକୁଣ୍ଠ ପୁରରେ ବିଶ୍ୱକର୍ମା ରହିଥିଲା । ସୁମରଣ ମାତ୍ରେ ଲକ୍ଷ୍ମୀ ଛାମୁରେ ମିଳିଲା ॥ କହ ଆଜ୍ଞା ହେଉ ମୋତେ ଲକ୍ଷ୍ମୀମହମାଈ ଶୁଣି ଆଜ୍ଞା ଦେଲେ ବିଶ୍ୱକର୍ମାକୁ ଯେ ଚୁମ୍ବି । ଚଣ୍ଡାଳୁଣୀ ବୋଲି ପ୍ରଭୁ ଦେଲେ ଦଣ୍ଡଭାର । ପାଟବସ୍ତ୍ର ଖଣ୍ଡିଏ ଜଡ଼ଉ ଟୋଳିଦେଇ । ଅଙ୍ଗମାତେ ବିଶ୍ୱକର୍ମା ବେଗେ ଚଳାଗଲା । ତିନିବେଣ ପ୍ରମାଣେ ଉଆସ ତୋଳାଇଲା ॥ ସୁବର୍ଣ୍ଣର କାନ୍ଥମାନ ସତ୍ୟବର ଜରା । ହୀରା ନୀଳ ମାଣିକ ଯେ ତହିଁ ଖଞ୍ଜାଇଲା ॥ ଗଣ୍ଡି ରଚିଲା ଅସଂଖ୍ୟ ମୁକୁତା ଲଗାଇଲା । ପ୍ରବାଳର ସ୍ତମ୍ଭମାନ ତହିଁରେ ରଚିଲା ॥ ପୂରିଦେଖି କନକିନୀ ସନ୍ତୁଷ୍ଟ ହୋଇଲେ । ବିଶ୍ୱକର୍ମାକୁ ବହୁତ ପ୍ରଶଂସା ଯେ କଲେ ॥ ବୈକୁଣ୍ଠପୁରକୁ ବିଶ୍ୱକର୍ମା ଚଳିଗଲେ । ଅଷ୍ଟ ବେତାଳଙ୍କୁ ଲକ୍ଷ୍ମୀ ଦେବୀ ଆଜ୍ଞା ଦେଲେ ॥ ଅଷ୍ଟବେତାଳରେ ତୁମ୍ଭେ ଏମନ୍ତ କରିବ । ପ୍ରଥମେ ରୋଷଶାଳ ଯାଇଣ ପଶିବ ॥ ଷାଠିଏ ପଉଟି

ଭୋଗ ଭୁଞ୍ଜିବ ଯେ ତହିଁ । ତେରପୌଠି ବ୍ୟଞ୍ଜନ ଖାଇବ ହର୍ଷ ହୋଇ ॥ ଶାଗ ମୁଗ ମଧୁ ରୁଚି ଭକ୍ତ କାଞ୍ଜି ଗଇ । ଅମ୍ବିଲ ଖାଇବ ଖଣ୍ଡସାକର ମିଶାଇ ॥ ଅମୃତ ମଣୋହିମାନ ଭୋଜନ କରିବ । ହାଣ୍ଡି କୁଣ୍ଡାଇକି ଏକଠବେ କରୁଥିବ ॥ ତହୁଁ ଯାଇ ଭଣ୍ଡାରର ମଧ୍ୟରେ ପଶିବ । ବାଉନକୋଟି ଭଣ୍ଡାର ଚହଣ ଅଣିବ ॥ କାଣିକଞ୍ଜଡ ବହାରଦ୍ରବ୍ୟ ନ ରଖିବ । ସବୁବନ୍ଧ ଅଣି ମୋହିପାଖେ ସମର୍ପିବ ॥ ବେତାଳେ ବୋଇଲେ ମହାଲକ୍ଷ୍ମୀ ମୁଖରୁହିଁ କେମନ୍ତ କରଣ ତହୁଁ ଅଣିବୁ ବୁଝାଇ ॥ ଜଗନ୍ନାଥ ମହାପ୍ରଭୁ ତହୁଁ ଚେଇଁ ଥିବେ । ଅମ୍ଭଙ୍କୁ ଦେଖିଲେ କାଟିଲ ପରିଭବ ଦେବେ ॥ ଶୁଣି କମଳିନୀ ନିଦ୍ରାବତୀଙ୍କି ଗଲେ । ଦଇନ ମୋ ବୋଲକର ବୋଲଣ ବୋଇଲେ ॥ ରାମକୃଷ୍ଣ ନୟନରେ ନିଦ୍ରା ତୁ ଘାରିବୁ । କାଲି ବେଳ ଦୁଇଘଡ଼ି ଯାଏ ନ ଛାଡ଼ିବୁ ॥ ଅଜ୍ଞା ପାଇ ନିଦ୍ରାବତୀ ଶୀଘ୍ରେ ଚଳିଗଲେ । ରାମକୃଷ୍ଣ ନୟନରେ ନିଦ୍ରା ଯେ ଘାରିଲେ । ପାକଶାଳରେ ବେତାଳେ ପ୍ରବେଶ ହୋଇଲେ । ପ୍ରବେଶ ହୋଇଣ ଭୋଗ ସକଳ ଖାଇଲେ ॥ ହାଣ୍ଡିମାନ ସବୁ ଏକଠାବେ କରୁଥିଲେ । ଭଣ୍ଡାର ଘରରେ ଅଷ୍ଟବେତାଳେ ପଶିଲେ ॥ ଯେତେକ ଦ୍ରବ୍ୟ ପୂର୍ଣ୍ଣ ହୋଇ ରହିଥିଲ ତହିଁ । ବାଉନକୋଟି ଭଣ୍ଡାର ଅଣିଲେ ବୁହାଇ ॥ ରାଜ ଷୋଳଘଡ଼ି ଯାକ ବେତାଳେ ଯେ ତହିଁ । କୁଲରୁ ଛାଣି ଯାଏ ସବୁ ନେଲେ ବହି ॥ ଦେଖିଣ ପରମଲକ୍ଷ୍ମୀ ସନ୍ତୁଷ୍ଟ ହୋଇଲେ । ତୁମ୍ଭେ ଆଜ ପ୍ରତିପଣ କଲରେ ବୋଲେ ॥ ପ୍ରଶଂସା କରିଣ ମାଏ ବଚନ ଯେ କହି । ସବୁଦ୍ରବ୍ୟ ଅଛିଲତ ରତ୍ନଖଟ ନାହିଁ ॥ ପାଞ୍ଚଲକ୍ଷ ଟଙ୍କା ମୂଲ୍ୟ ସେ ଖଟ ଅଟଇ । ଯାଅରେ ବେତାଳେ ଏବେ ଖଟ ଅଣ ବହି ॥ ଯେତେବେଳେ ଜଗନ୍ନାଥ ଦରିଦ୍ର ହୋଇବେ । ରତ୍ନଖଟ ବିକିକରି ଦାନ କରାଇବେ ॥ ଜଗନ୍ନାଥ ପ୍ରଭୁ ଯେବେ ମୋତେ ନ ଖୋଜିବେ । ତାଙ୍କ ପୁରୁଷମାନେ ଅନ୍ନକୁ ଲୋଡ଼ିବେ ॥ ମୋତେ ଯେନି ପ୍ରଭୁ ଯେବେ ନ କହିବେ ଘର । କଳି-ଯୁଗେ ତାଙ୍କି ଯେ ନ ଖୋଜିବେ ନର ॥ ବେତାଳେ ଯେ ବୋଲିଛନ୍ତି ଲକ୍ଷ୍ମୀମୁଖ ରୁହିଁ । ରତ୍ନଖଟେ ଶୋଇଛନ୍ତି ଦୁଇଗୋଟି ଭାଇ ॥ କେତେକୋଟି ପରାକ୍ରମୀ ପ୍ରଭୁ ବଳରାମ । ପୁଣି ତହିଁ ଶୋଇଛନ୍ତି କାନ୍ତପୁଞ୍ଜିନେ ॥ ଶ୍ୟାମ

କୋଟି ପର୍ବତରୁ ଅଟନ୍ତି ସେ ଗରୁ, ନାମ ବହୁଅଛନ୍ତି ଅଚଳ ମହାମେରୁ ॥ ମହାଲକ୍ଷ୍ମୀ ବୋଇଲେକର ଏମନ୍ତ କରିବ । ଦଉଡ଼ିଆ ଖଟ ଏକ ଗୋଟିଏ ଆଣିବ । ରାମକୃଷ୍ଣ ଦୁହିଙ୍କି ସେ ଗଡ଼ାଇଣ ଦେବ । ଶୋଇବାର ରତ୍ନଖଟ ବହିଣ ଆଣିବ ॥ ଏହା ଶୁଣି ବେତାଳେ ସେ ଶୀଘ୍ର ଚଳିଗଲେ । ରତ୍ନଖଟ ପାଖେ ଦଉଡ଼ିଆ ଖଟ ଦେଲେ ॥ ବଳରାମଙ୍କୁ ପ୍ରଥମେ ଧଇଲେକ ଯାଇ । ଦଉଡ଼ିଆ ଖଟକୁ ସେ ଦେଲେ ଗଡ଼ାଇ ॥ ଏ ଉତ୍ତାରେ ଜଗନ୍ନାଥ ପ୍ରଭୁଙ୍କୁ ଧଇଲେ । ଦଉଡ଼ିଆ ଖଟ ଉପରକୁ ଗଡ଼ାଇଲେ ॥ ଶୋଇବାର ରତ୍ନଖଟ ଆଣିଲେ ତ ବହି । ମହାଲକ୍ଷ୍ମୀ ଆଗେ ଦେଲେ ଆନନ୍ଦରେ ନେଇ ॥ ବଳରାମ ପିନ୍ଧିବାର ପାଟ ବହିଆଣିଲେ । ଜଗନ୍ନାଥ ପିନ୍ଧିବାର ନେତ ଘେନି ଗଲେ ॥ ଦେଖିଣ ପରମଲକ୍ଷ୍ମୀ ସନ୍ତୁଷ୍ଟ ହୋଇଲେ । ଅଷ୍ଟବେତାଳଙ୍କୁ ବର ଯାଚିଣ ସେ ଦେଲେ ॥ ଅରେ ଅଷ୍ଟବେତାଳରେ ଏମନ୍ତ ହୋଇବ, ବୈକୁଣ୍ଠ ପୁରରେ ଯାଇ ସୁଖରେ ରହିବ ॥ ଆଜ୍ଞା ପାଇଣ ବେତାଳଗଣ ଚଳିଗଲେ । ବୈକୁଣ୍ଠ ପୁରରେ ଯାଇ ପ୍ରବେଶ ହୋଇଲେ ॥ ମହାଲକ୍ଷ୍ମୀ ତହୁଁ ଏକଚିତ୍ତ ବିଚାରିଲେ । ସରସ୍ୱତୀ ଦେବୀଙ୍କି ସେ ହୃଦେ ସୁମରିଲେ ॥ ବୋଇଲେ ଗୋ ସରସ୍ୱତୀ ଏମନ୍ତ କରିବ । ରାଜ୍ୟ ରାଜ୍ୟ ହୋଇ ଘରେ ବୁଲୁଥିବ ॥ ସବୁ ଦ୍ୱାରେ ଜଗନ୍ନାଥ ବୁଲିବେକ ଯାଇ । ସର୍ବ କହେ ସରସ୍ୱତୀ ବଚନେକର ଭିକ୍ଷ ଅନ୍ନ ପାଣି କେହି ତାଙ୍କୁ କିଛିହେଁ ନ ଦେବ । ଏମନ୍ତ ଦୁଃଖ ପାଇଲେ ସେ ମୋତେ ସୁମରିବେ ॥ ଯେ ଦିନର ରାମରାତ୍ରି ପୂର୍ଣ୍ଣରେ ପାହିଲା । ବେଳ ଦୁଇ ଘଡ଼ି ପରେ ନିଦ୍ରା ସେ ଭାଙ୍ଗିଲା ॥ ବଳରାମ କହୁଛନ୍ତି ଶୁଣରେ କହ୍ନାଇ । ଗହଳ ଚହଳ ଆଜି କିଛି ଶୁଭୁ ନାହିଁ ॥ ମୁଦିରଥ ପଣ୍ଡାରତ ଭିତ୍ତି ଶୁଭୁ ନାହିଁ । ଦାସୀ ପରିବାରୀ ସେ ପରିଚ୍ଛ ଗଲେ କାହିଁ ॥ ଶ୍ରୀ ମୁଖ ପଖାଳିବାକୁ ଜଳ ନ ମିଳଇ । କିବୁଦ୍ଧି କରିବା ଏବେ କହରେ କହ୍ନାଇ ॥ ଜଗନ୍ନାଥ କହୁଛନ୍ତି ଶୁଣ ବୋଧ୍ୟସ୍ତୁ ଭାଇ । ଲକ୍ଷ୍ମୀ ଛାଡ଼ିଗଲାରୁ ସେ ଏମନ୍ତ ହୁଅଇ ॥ ବଳରାମ କହୁଛନ୍ତି ଶୁଣରେ କହ୍ନାଇ । ଭାର୍ଯ୍ୟା ଛାଡ଼ିଲୁ ଏମନ୍ତ କାହିଁକି ତୁମ୍ଭ କାହାର ଭାର୍ଯ୍ୟା ଯେବେ ଛୁଟି ହୋଇଯାଏ । ତାହା ଗୃହସ୍ଥ କି ଭାତ ରନ୍ଧଣ ନ ଖାଏ ॥ ଉତ୍ତାର ଘରକୁ ବାହାରି କଲେ ଦୁଇ ଭାଇ ।

ଭଣ୍ଡାରେ ଦେଖିଲେ କିଛି ପଦାର୍ଥ ଯେ ନାହିଁ ॥ ବଳରାମ କହୁଛନ୍ତି କାହିଁ
କସ ହେଲା । ବାଉନ ଗୋଟି ଭଣ୍ଡାର କିଏ ଘେନି ଗଲା ॥ ଲକ୍ଷେ ଜୀବ
ଖାଇଲେ ବଢ଼ିଲେ ନ ସରଇ । କ୍ଷଣକ ଭିତରେ କିଏ ଘେନିଗଲା ବହି ॥
ସୁବର୍ଣ୍ଣମୁଦିଏ ବଳରାମ ଯେ ପାଇଲେ । ସାତଗୋଟି ଗଣ୍ଠି ଦେଇ କାନିରେ
ବାନ୍ଧିଲେ ॥ ଜଗନ୍ନାଥ ବୋଇଲେ ହେ କି ପାଇଲ ଭାଇ । ବଳରାମ କହୁ-
ଛନ୍ତି ଧନ ପାଇଲଇଁ ॥ ଶୁଦ୍ଧ ସୁବର୍ଣ୍ଣ ଯେଉଁ ଧନ ହୋଇଥିବ । କାଣୀ
କଉଡ଼ି କଡ଼ାକୁ ସମାନ ନୋହିବ ॥ ଜଗନ୍ନାଥ କହୁଛନ୍ତି ବଳରାମ ଭାଇ
ତୋଙ୍କି ପିତଳ ଗଣ୍ଠିକ ପାଇଥିଲ କାହିଁ ॥ ବଳରାମ କହୁଛନ୍ତି କି କଥା-
ଘଟିଲା । ପାଇଥିବ ସ୍ୱର୍ଣ୍ଣଦେଙ୍ଗ ପିତଳ ହୋଇଲା ॥ ସେଠାରୁ ବାହାରି
ଗଲେ ଦୁଇଗୋଟି ଭାଇ । ପାକଶାଳଦ୍ୱାରେ ଯେ ପ୍ରବେଶିଲେ ଯାଇ ॥ ବଳ
ରାମ ଠିଆହେଲେ ଦୁଆର ମୁହଁକୁ । ଜଗନ୍ନାଥ ପଶିଗଲେ ରୋଷାଇ ଘରକୁ
ଦେହରେ ଲଗିଲା କଳା ମୁହଁରେ ଲାଗିଲା । କଳାଶ୍ରୀମୁଖ ଗୋଟିକ ଝଲକି
ଉଠିଲା ॥ ବଳରାମ କହୁଛନ୍ତି ଶୁଣ ଜଗନ୍ନାଥ । ବଡ଼ଖିଆ ବୋଲି ତୋତେ
ବୋଲନ୍ତି ଜଗତ ॥ ମୋତେ ଅନ୍ନ ନ ଦେଇଣ ସବୁ ଖାଉ ତୁହି । ଜଗ-
ନ୍ନାଥ କହୁଛନ୍ତି ଶୁଣ ଜ୍ୟେଷ୍ଠଭାଇ ॥ ଅନ୍ନ କାହୁଁ ମିଳିବ ତେଜ ଚୁଲି ସୁଧା
ନାହିଁ । ନବୁଝି ଏପର କ୍ଷୁଧା କହୁଛ ତୋପାଇଁ ॥ ସେଠାରୁ ଯାଇ ଦେଖିଲେ
ଧାନର ମରେଇ । ଲକ୍ଷ୍ମୀ ଭରଣ ଯେ ଧାନ ତହିଁ ଥାଇ ॥ ଦେଖିଲେ
ଅଗାଡ଼ି ତହିଁ ଧାନଟିଏ ନାହିଁ । ତହୁଁ ଗଲେ ଦୁଇଭାଇ ନିବସ ଯେ ନୈଋଇ
ଇନ୍ଦ୍ରଦ୍ୟୁମ୍ନକୂଳେ ଯାଇ ପ୍ରବେଶ ହୋଇଲେ । ଟୋପାଏ ଶୁଖା ଯେ ପାଣି
ତହିଁ ନ ଦେଖିଲେ ॥ ବଡଦେଉଳରେ ଯାଇ ପ୍ରବେଶ ହୋଇଲେ । ସେ
ଦିନ ଯେ ଉପବାସ କରିଣ ରହିଲେ ॥ ବେଳ ଦୁଇଘଡ଼ି ପରେ ନିଦ୍ରା ଯେ
ଭାଙ୍ଗିଲା । ମୁଖ ପ୍ରକ୍ଷାଳନ ଅର୍ଥେ ପାଣି ନ ମିଳିଲା ॥ କି ବୁଦ୍ଧି କରିବା
ଏବେ ବୁଦ୍ଧି ଦିଶୁନାହିଁ । ବଳରାମ କହୁଛନ୍ତି ଶୁଣରେ କହ୍ନାଇ ॥ କାଲି
ଉପବାସେ ରହିଲେ ଦୁଇଭାଇ । ଆଜି ପାଣିଦ ପିବାକୁ ତ ବଳ ହେଉ-
ନାହିଁ । କେଉଁଠାରୁ ଯେବେ ଅନ୍ନ ନ ମିଳିବ ଅନ୍ନ ॥ କେମନ୍ତ ପ୍ରକାରେ
ଆମ୍ଭେ ଧରିବା ଜୀବନ ॥ ବଳରାମ କହୁଛନ୍ତି ଶୁଣ ଆରେ ବାବା । ନଗ

ରହେ ଭିକ୍ଷା ମାଗି ଜୀବନ ପୋଷିବା ॥ କାନ୍ଧରେ ପକାଇ ଝୁଣ୍ଡା ଉତ୍ତରୀ ପଇତା
ହସ୍ତରେ ଧଇଲେ ଭାଇ ଦୁହେଁ ଭଙ୍ଗା ଛତା ॥ ଚଢ଼ା ଦେଖିବାକୁ ଜଳ ଚାହିଁ
ନ ପାଅନ୍ତି । ଯାହା ଘରଠାକୁ ପାଣି ମାଗିବାକୁ ଯାନ୍ତି ॥ ଚୋର ଖଣ୍ଡ ବୋଲି
ମାରି ଘଉଡ଼ାଇ ଦିଅନ୍ତି ॥ ସେଠାବରୁ ଦୁଇଭାଇ ଭୟେ ପଳାଅନ୍ତି ॥ ଜଗନ୍ନାଥ
କହୁଛନ୍ତି ସ୍ୱର୍ଣ୍ଣ ଝୋଟି ଦିଶୁଅଛି । ବଡ଼ପଣ୍ଡା ଘରଠାକୁ ଏବେ ଚାଲ ଯାଇ ॥ ହସ୍ତ
ଧରାଧରି ହୋଇ ଦୁଇଭାଇ ଗଲେ, ବଡ଼ପଣ୍ଡା ଘରଠାରେ ପ୍ରବେଶ ହୋଇଲେ
ବଧୂ ତାର କହଇ ଯେ ଶାଶୁ ଆଗେ ଯାଇ । ବ୍ରାହ୍ମଣ ଯେ ଦୁଇଗୋଟି ଅଛୁ-
ଛନ୍ତି ଧାଇଁ ॥ ଶାଶୁ ସାଆନ୍ତାଣୀ ତାଙ୍କୁ ଚିହ୍ନି ନ ପାରିଲା ; ଧାଇଁ ଯାଇ
ବେଗେ ଦାଣ୍ଡକବାଟ କିଳିଲା ॥ ଅସ ୨ ବହୁଲେ ପିଠଣା ଠେଙ୍ଗା ନେଇ ।
ଚୋର କି ଖଣ୍ଡ ଏ ଦୁହେଁ ଦେବା ଘଉଡ଼ାଇ ॥ ଶୁଣି ଦୁଇଭାଇ ତହୁଁ ଭୟେ
ପଳାଇଲେ । ସାମବେଦ ଯଜୁର୍ବେଦ ଦୁହେଁ ଉଚ୍ଚାରିଲେ ॥ ଶୁଣି ଶୁଷ୍କ ତରୁ
ଗଣ ପଲ୍ଲବ ଉଠିଲେ । ଭିକ୍ଷୁକ ବ୍ରାହ୍ମଣ ବୋଲି ବ୍ରାହ୍ମଣୀ ଚିହ୍ନିଲେ । ଦୁଇ
ଭାଇଙ୍କୁ ଡାକିଣ ତହୁଁ ବସାଇଲା । ଖୁଦମଲୁଖ ମିଶାଇ ହସ୍ତରେ ବାନ୍ଧିଲା ॥
ଅଣ୍ଟା ବନ୍ଧାଳମଣ୍ଡା ଠଗାଠିଏକ ଆଣି । ବେନିଭାଇ ପକାଇଣ ସିଝିଲେକ
ପାଣି ॥ କଂସାଟେକ ବ୍ରାହ୍ମଣୀ ଯେ ଅନ୍ନ ଅଣି ଦେଲା । ଅନ୍ନ କି ଅଣିବ ତାର
ହାଣ୍ଡି ଉଭାଇଲା ॥ ଲକ୍ଷ୍ମୀଦ୍ରୋହୀ ପୁରୁଷ ଏ ବୋଲିଣ ଜାଣିଲା, ପାକଶାଳରୁ
ଚୋଲଟି ହାତରେ ମିଳିଲା । ଦୁଇଗୋଟି ଭାଇଙ୍କର ହସ୍ତକୁ ଧଇଲା । କଣ୍ଠୁ
ଆ ବହୁ ନେଇ ଦାଣ୍ଡରେ ଛାଡ଼ିଲା ॥ ତହୁଁ ଦୁଇଜଣ ଯେ ନିରାଶ ହୋଇ
ଗଲେ । କବୀର ସାହିରେ ଯାଇ ପ୍ରବେଶ ହୋଇଲେ ॥ କ୍ଷୁଧାର୍ତ୍ତି ବ୍ରାହ୍ମଣ
ବୋଲି କବୀର ଜାଣିଲେ । ଖଇ ମାଣ ଗୁଡ଼ ପାଞ୍ଚ ଅଣି ବେଗେ ଦେଲେ ॥
ଅନ୍ତର୍ଗତେ ଜାଣିଲେ ତା ଦେବୀ କମଳିନୀ । ପବନକୁ ଡାକି ଆଜ୍ଞା ଦେଲେ
ସେହିକ୍ଷଣି ॥ ଅରେ ୨ ପବନ ତୁ ବେଗ ହୋଇ ଯିବୁ । ଖଇ ମାଣ ଗୁଡ଼
ପାଞ୍ଚ ଉଡ଼ାଇଣ ଦେବୁ ॥ ଆଜ୍ଞା ପାଇ ପବନ ଯେ ବେଗେ ଚଳିଗଲା ।
ପ୍ରଭୁଙ୍କ ଆଗରୁ ଖଇ ଉଡ଼ାଇଣ ନେଲା ॥ ବଳରାମ କହୁଛନ୍ତି ଶୁଣରେ
କହ୍ନାଇ । ପ୍ରାଣ ଯିବା ବେଳେ ଜାତିକୁଳ ଲୋଡ଼ୁ କାହିଁ ॥ ପଞ୍ଚ ସୋମଙ୍କ
ଗୃହ ଯିବା ଦୁଇଭାଇ । ଯଦ୍ଯପି ଫଳ ଖାଇ ପ୍ରାଣ ବଞ୍ଚାଇବା ତହୁଁ ॥ ଫଳପୁଷ୍ପ

କର ତହୁଁ ମୁଡ଼ାଏ ଅଣିବା । ଅଧିକ ମିଳିଲେ କିଛି ନଅଁପୁ ବରିବା ॥ ଏମନ୍ତ ବିଚାରକରି ଦୁଇଭାଇ ଗଲେ । ପଦ୍ମପୁଷ୍କରିଣୀରେ ଯାଇ ପ୍ରବେଶ ହୋଇଲେ ପଦ୍ମ ପୋଖରୀରେ ସାତତାଳ ପାଣିଥିଲା । ଲକ୍ଷ୍ମୀ ଅଜ୍ଞାମାନେ ତାହା ପଙ୍କ ହୋଇଗଲା ॥ ଜଗନ୍ନାଥ କହୁଛନ୍ତି କବୁଡ଼ି କରିବା । ଜଳନାହିଁ ଫଳଏଥି କାହିଁରୁ ପାଇବା ॥ ଏକାକହି ଦୁଇଭାଇ ତହୁଁ ଚଳିଗଲେ । ଯାଉ୨ବାଟେ ଏକ ଯୋଗୀକି ଦେଖିଲେ ॥ ଜଗନ୍ନାଥ କହୁଛନ୍ତି ଶୁଣ ଅହେ ନାଥ । ତୁମ୍ଭର ଥାଳିରୁ ଯେ ଅମ୍ଭଙ୍କୁ ଦିଅ ଭାତ ॥ ସତ୍ୟାନନ୍ଦ ବୋଇଲେ ରାମକୃଷ୍ଣ ମୁନିଗୁହିଁ, ଲକ୍ଷ୍ମୀଦ୍ରୋହୀ ହୋଇଅଛ ତୁମ୍ଭେ ଦୁଇଭାଇ ॥ ଦୁଧଅନ୍ନରେ ମୋର ଥାଳି ପୁର ଥିଲା । ତୁମ୍ଭେ ମାଗନ୍ତେଣ ଅନ୍ନ ଶୂନ୍ୟ ହୋଇଗଲା ॥ ଅନ୍ନ ଜଳ ନ ମିଳିବ ତୁମ୍ଭଙ୍କୁ ଯେ କାହିଁ । ସମୁଦ୍ରକୂଳକୁ ବେଗେ ଯାଅ ଦୁଇଭାଇ ॥ ମୁହିଁ ଯାଇ ଥିଲି ଯେତେ ଅନ୍ନଥିଲେ ଦେଇ, ଖାଇଲେ ବଢ଼ିଲେ ଯେ ସେ ଅନ୍ନ ନସର ଏହିରୂପେ ସତ୍ୟାନନ୍ଦ ବାରତା କହିଲେ । ଯିବୁ ବୋଲି ଦୁଇଭାଇ କମର କାଛିଲେ ॥ ହଟି କମଳିନୀ ସେହୁ ହଠ ଭିଆଇଲେ । ସୂର୍ଯ୍ୟଙ୍କୁ ସରଣଦେବୀ ବେଗେ ଆଜ୍ଞାଦେଲେ ॥ ଅତିଶୀଘ୍ର ତାତିଗଲା ବାଟେ ବେଗେଯାଇ । ବାଲି ମାଟି ତାତୁ ବେଗେ ଡ଼ହ ୨ ହୋଇ ॥ ତାତିଲା ଖରାରେ ଯେତେହେଁ ଚାପିବାର ବାଲି । ପାଦେମାନ ତହୁଁ ଚେହୁ ନ ପାରିବେ ଚାଲି ॥ ଜଗନ୍ନାଥ କହୁଛନ୍ତି ଶୁଣ ଜ୍ୟେଷ୍ଠଭାଇ । ଏତେତାତ ଖରାରେ ମୁଁ ଚାଲି ନ ପାରଇ ॥ ବେଗ ୨ ହୋଇ ତୁମ୍ଭେ ଯାଉଅଛ ଧାଇଁ, ବୁଝି ଦେଖୁନାହିଁ ମୋତେ କସ ହେବଇଁ ॥ ଶୁଣି ନ ଶୁଣିଲାପ୍ରାୟେ ବଳଦେବ ଗଲେ । କମଳାଙ୍କ ସିଂହଦ୍ୱାରେ ପ୍ରବେଶ ହୋଇଲେ ॥ ସିଂହଦ୍ୱାରେ ପ୍ରବେଶିଣ ଡାକିଲେକ ଯହୁଁ । ଡାକ ଶୁଣି ଦାସି ମାନେ ଅଇଲେକ ତହୁଁ ॥ କେଉଁ ଦାସୀ କହୁଅଛି ଶୁଣ ଆଗୋ ସଖୀ । ଏପରି କାଙ୍ଗାଳ ମୁଁ ଯେ କାହିଁ ଦେଖି ନାହିଁ ॥ ଏହାପର ମୋଟା ହୋଇ ଗୋଟିଏ ଯେ ଥିଲା । ଅମ୍ଭ ଠାକୁରାଣୀଙ୍କି ସେ ଘଉଡ଼ାଇଦେଲା ॥ ଏହିରୂପେ ଦାସୀମାନେ କ୍ରୋଧାକୁଳ ହେଲେ । ବେକରେ ହାତ ଦେଇଣ ଦାଣ୍ଡରେ ଛାଡ଼ିଲେ ॥ ବଳରାମ ପ୍ରଭୁ ତହୁଁ ଲେଉଟି ଅଇଲେ । ଜଗନ୍ନାଥ ଠାକୁରଙ୍କୁ ବାଟେରେ ଦେଖିଲେ ॥ ବଳରାମ କହୁଛନ୍ତି ଶୁଣରେ କହ୍ନାଇ । ଦାସୀମାନେ

ଆସି ମୋତେ ଦେଲେ ସଉତାଳ ॥ ଜଗନ୍ନାଥ କହୁଛନ୍ତି କାରୁଣି କରିବା, କେମନ୍ତପ୍ରକାରେ ଅମ୍ଭେ ଜୀବନ ଧରିବା ॥ ଅଉ ଥରେ ଚାଲ ଦୁଇଭାଇ ଫେରି ଯିବା, ବଣସ୍ତୃ କରିଣ ଯାଇ ଦାସୀଙ୍କି ମାଗିବା ॥ ବଳରାମ କହୁଛନ୍ତି ପଛେ ଅମ୍ଭେ ଥିବୁ । ଆଗରେ ଥାଇଣ ତୁହି ଅନ୍ନ ଯେ ମାଗିବୁ ॥ ଏତେକ କହି ସିଂହ ଦ୍ୱାରେ ପ୍ରଭୁ ବିଜେ କଲେ । ମନ୍ଦିର ଶୋଭା ଦେଖିଣ ଆଶ୍ଚର୍ଯ୍ୟ ହୋଇଲେ ॥ ବଳରାମ ବୋଇଲେ ଯେ ଶୁଣରେ କହ୍ନାଇ । ପଞ୍ଚମସ୍ୱରରେ ଆସି ବେଦପଢ ତୁହି ॥ ଜଗନ୍ନାଥ ପ୍ରଭୁ ଯହୁଁ ଏମନ୍ତ ଶୁଣିଲେ । ଓଁ କାର ଶବଦ କରି ବେଦ ଧ୍ୱନି କଲେ ॥ ରୁକ, ଶାମ, ଜଜୁ, ଯେ ଅଥର୍ବ ଚାରିବେଦ । ବ୍ରହ୍ମାଣ୍ଡ ପୁରି ଉଠିଲା ଗହ ୨ ନାଦ ॥ ପଲଙ୍କ ଉପରେ ଯେ କମଳା ଶୋଇଥିଲେ । ନିସ୍ତରିଲ ୨ ବୋଲିଣ ବୋଇଲେ ॥ କେଉଁଠି ୨ ଇନ୍ଦ୍ରର ପାତକ ଗଲା କ୍ଷୟ । ମୋ ଘରେ ବିଜୟ କଲେ ପ୍ରଭୁ ଦେବରାୟ ॥ ପଚାର ୨ ଦାସୀ ପଚାର ଲୋ ଯାଇ । କିସ ମାଗୁଛନ୍ତି ସେ ବ୍ରାହ୍ମଣ ଦୁଇଭାଇ ॥ ଯାଇ ମୃଦୁସୁଲି ଦାସୀ ତାଙ୍କୁ ପଚାରିଲ କି ମାଗୁଛ ପଣ୍ଡାମାନେ କହ ତୁମ୍ଭେ ଭଲ ॥ ଜଗନ୍ନାଥ କହୁଛନ୍ତି ଦାସୀମୁଖ ଚାହିଁ । ଅନ୍ନ ଗଣ୍ଡାଏ କତୁମ୍ଭେ ପାରିବକି ଦେଇ ॥ ଏମନ୍ତଶୁଣିଣ ଦାସୀମାନେ ଚଳିଗଲେ । ଲକ୍ଷ୍ମୀଠାକୁରାଣୀ ଆଗେ ବେଗେ ସେ କହିଲେ ॥ ଦାସୀଙ୍କ ମୁଖରୁ ଯେ ଏମନ୍ତବାକ୍ୟ ଶୁଣି । ମନେ ବିଚାରକରନ୍ତି ଲକ୍ଷ୍ମୀ ଠାକୁରାଣୀ ॥ ଏ କର୍ମ ଅରଜି ଅଛି ଚଣ୍ଡାଳୁଣୀ ମୁହିଁ । ଏବେ ଦାସୀମାନେ ଲୋ ପଚାର ଦେଖିଯାଇ ॥ ବ୍ରାହ୍ମଣହୋଇ ମୋ ଘରେ କେମନ୍ତେ ଭୁଞ୍ଜିବେ, ଚଣ୍ଡାଳୁଣୀ ଅପବାଦ ସଂସାରେ ପାଇବେ ॥ ଏମୋହର ଦ୍ରବ୍ୟ ତାଙ୍କୁ ରୁଚିବ ନ ଯୋଗାଇ ଜାଣୁ ୨ ମୁଁ କେମନ୍ତ ପ୍ରକାରେ ଦେବଇଁ ॥ ଠାକୁରାଣୀ ସମିପରୁ ଦାସୀମାନେ ଗଲେ ବ୍ରାହ୍ମଣଙ୍କ ଅଗେଯାଇ ଏସବୁ କହିଲେ ॥ ଦାସିଙ୍କମୁଖରୁ ଯେ ଏମନ୍ତ ବାକ୍ୟ ଶୁଣି । କ୍ଷୁଧାତୁର ହୋଇ ଯେ କହନ୍ତି ହଳପାଣି ॥ ନୂଆହାଣ୍ଡି ନୂଆ ସଆ ଦେଇତୁ ପାରିବୁ । ଏମନ୍ତ ହୋଇଲେ ଅମ୍ଭେ ଦୁହେଁ ଯେ ଖାଇବୁ ॥ ଦାସୀମାନେକହନ୍ତି ଲକ୍ଷ୍ମୀଅଗେଯାଇ । ହାତେବାନ୍ଧି ଭୋଜନ କରିବେ ଦୁଇ ଭାଇ । ଏହାଶୁଣି ମହାଲକ୍ଷ୍ମୀ ସନ୍ତୋଷହୋଇଲେ, ଦାସୀଙ୍କହସ୍ତରେ ହାଣ୍ଡିଦଣ୍ଡ ଗୋଟି ଦେଲେ ॥ ଚୁଲ ପୌଠିଏ ନେଇ ଛାମୁରେ ରଖିଲେ । ଲେଉଟିଆ

ଶାଗ ନେଇ ଚୁଡ଼ାଏକ ଦେଲେ, ଅଳୁ ସାରୁ କଦଳୀ ଯେ ବାଇଗଣ । ଦୁଧ ଦହି ଛେନା ଯେ ଶର୍କରା ଦେଲେ ପୁଣ ॥ ଏବେ ଯେତେକଇଛ ସେତେ ଭୁଞ୍ଜି ହେ ବୋଇଲେ । ଗୃହେ ଥାଇ ମହାଲକ୍ଷ୍ମୀ ବିସ୍ମୟ ଯେ କଲେ ॥ ବନ୍ଧାଣ ଭୁଞ୍ଜିବେ ଯେବେ ଏହି ଦୁଇ ଭାଇ । ନାରୀଙ୍କି ପୁରୁଷ ଅଇ ଲୋଡ଼ିବେ କାମ୍ପ ଇ ॥ ଲକ୍ଷ୍ମୀ ଦେବୀ କାଠଖଣ୍ଡେ ହସ୍ତରେ ଧଇଲେ । ଅଗ୍ନି ସ୍ତମ୍ଭନ ମନ୍ତ୍ର ଦେବୀ ପାଠ କଲେ କଦାପି ଅଗ୍ନିଦେବତା ତେଜ ନ ହୋଇବ । ହାଣ୍ଡି ନ ତାତିବ ଅଉ ପାଣି ତାତିବ ॥ ଯେତେକ କାଠ ଜାଳୁଥିବ ଭସ୍ମ ହୋଇଯିବ । କୁହୁଳି କବଣ ତହିଁ ଧୂଆଁ ହେଉଥିବ ॥ ଏମନ୍ତ ବୋଲିଣ ଯେ କମଳା ଆଜ୍ଞା ଦେଲେ । ସେହି ପ୍ରକାରେ ଅଗ୍ନିଦେବତା ଯେ କଲେ ॥ ସବୁ କାଠ ଯାକ ତହିଁ ଅଙ୍ଗାର ହଇଲା ସେବେ ସୁଦ୍ଧା ଯେ କଇଁଚେ ପାଣି ନ ତାତିଲା ॥ କୂଟ କମଳିନୀ ଖେଳ ଭିଆ-ଇଲେ ଯେଣୁ । ହାଣ୍ଡି ତଳେ କଳଟିବେ ନ ପଡ଼ିଲା ତେଣୁ ॥ ସୁଗନ୍ଧ ତଇଲ ଦେବୀ ଦେଲେ ପଠାଇ । ଦାସୀମାନେ କହୁଛନ୍ତି ବ୍ରାହ୍ମଣଙ୍କୁ ଯାଇ ॥ ପାକ ସିଦ୍ଧ ହେଲା କି ହେ ନ ହେଲା ଗୋସାଇଁ । ତଇଳ ଲଗାଇ ସ୍ନାନ କର ବେଗ ଯାଇ ॥ ଜଗନ୍ନାଥ କହନ୍ତି ପାଣି ନ ତାତିଲା । କି ପାକ କରିବୁ ବେଳ ଉଛୁର ହୋଇଲା ॥ ବଳରାମ କହୁଛନ୍ତି ଶ୍ରୀଙ୍କରେ କହ୍ନାଇ । ଅନ୍ନ ହୋଇଲା କି ନାହିଁ କହ ବେଗ ତୁହି ॥ ଜଗନ୍ନାଥ କହୁଛନ୍ତି ଶୁଣ ଅଗ୍ରଜ ଭାଇ । ଅନ୍ନ କି ହଇବ ଟିକେ ପାଣି ତାତୁ ନାହିଁ ॥ ବଳରାମ କହୁଛନ୍ତି ରେ ଅଟୁଆ ହିଁ ବନ୍ଧ ନ ଜାଣି ତୁ ହୋଇଛୁ ରାନ୍ଧୁଣିଆ ॥ ତୁହି ଅଡ଼ହୁଅ ମୁହିଁ ବନ୍ଧୁ ଚୁଲ୍ଲି ଯାଇ; ଅନ୍ନ ରାନ୍ଧିବାକୁ ଗଲେ ବ୍ରହ୍ମାଣ୍ଡ ଗୋସାଇଁ ॥ ପୁଞ୍ଜି ୨ ବଳରାମ କାଠକୁ ଜାକଲେ କାଠ ଖଣ୍ଡେ ଦେଇଣ ହାଣ୍ଡି ପିଟି ଦେଲେ ॥ ଜଗନ୍ନାଥ ବୋଇଲେ ତ ବୁଧି ଦିଶୁ ନାହିଁ । କ୍ଷୁଧାରେ ଅତୁର ଯେ ହେଉଛୁ ମୋହ ଦେହି ॥ ବଳରାମ କହୁଛନ୍ତି ଶୁଣ ଜଗନ୍ନାଥ । ଜାତି ପଛେ ଯଉ ତାର ଘରେ ଖାଅ ଭାତ ॥ ଯେବେ ଏହି ଘରୁ ଭାତ ଅମ୍ଭଙ୍କୁ ନ ଦେବ । ଆମ୍ଭ ଦୁଇ ଭାଇଙ୍କର ମରଣ ହୋଇବ ॥ ଲେଉଟିଣ ଦାସୀ ଯାଇ ଲକ୍ଷ୍ମୀଙ୍କୁ କହିଲେ । ବ୍ରାହ୍ମଣ ତ ହାଣ୍ଡି ଭାଙ୍ଗି ପୋଡ଼ି ଦେଲେ ॥ ଏହା ଶୁଣି ମହାଲକ୍ଷ୍ମୀ ମନେ ଚିନ୍ତା କଲେ

କେତେଦୁଃଖ ଦୀନବନ୍ଧୁ ଦୁର୍ଦ୍ଦୈବେ ପାଇଲେ ॥ ସୁବର୍ଣ୍ଣର ଚଟୁ ଗୋଟି ହସ୍ତରେ ଧଇଲେ । ବୋଷାଇଶାଳକୁ ଲକ୍ଷ୍ମୀ ନଟେ ବିଜେ କଲେ ॥ ପ୍ରଥମେ ରାନ୍ଧିଲେ ମ ଏ ବଗଡ଼ା ଓଦ ଅନ୍ନ । ମୁଗ ମସୁରର ଷିରି ନାନାବିଧ ବ୍ୟଞ୍ଜନ ॥ ଅମ୍ବିଳ ଶାକର କଲେ କଦଳୀର ଭଜା । ଅତିଯତନେ କଲେ ମାଏ ତଅଣ ଯେ ମଞ୍ଜା ॥ ଷାଠିଏ ପଉଟି ଯେ ରନ୍ଧନ କଲେ ଯାଇ, ବଗଡ଼ାଭାତ ମହିମା କଳନା ନଯାଇ ଦୁଧପୁଳି କଲେ ମାଏ ଘୃତପୁଳି କଲେ । ଅତି ଯତନରେ ଲକ୍ଷ୍ମୀ ସରପୁଳି କଲେ ॥ ଯେତେକ ଭାଜୁଛନ୍ତି ସବୁ ବ୍ରାହ୍ମଣଙ୍କ ରୁଚି ॥ ବଡ଼ିର ମହୁର କଲେ ପକାଇଣ ଶାଚ ॥ ସରସେ ଅଟିକା ରାନ୍ଧି ଦ୍ରବ୍ୟ ସମ୍ପାଦିଲେ । ଷାଠିଏ ନଉତି ପଣା ଗୋଳାଇ ରଖିଲେ ॥ କର୍ପୁର ମରିଚ ଛେନାପଣା ସଜାଡ଼ିଲେ । ଯେ ଯାହା ସ୍ଥାନରେ ଯତନେ ରଖାଇଣ ଦେଲେ ॥ ବଙ୍ଗବାଣ ପଛର ସଙ୍ଗତେ ଛେନାପଣା । ଅଦାମିଶା କରି ଯେ ନବାତଖଣ୍ଡ ଛେନା ॥ ଲକ୍ଷ୍ମୀଙ୍କର ପାକ-ଗୁଣ କେ କହି ପାରିବ । ଷଣ୍ଟୀକମ୍ଭ ତଳେ ମାଏ ସଜାଡ଼ିଲେ ସର୍ବ ॥ ସବୁଥିରୁ ଖଣ୍ଡିଏ ୨ ରଖିଥିଲେ । ଭୋଜନଶେଷକୁ ଯୋଡାପିଠାଏ ରଖିଲେ।ବଇଲେ ଦାସୀଙ୍କି କର ଅଙ୍ଗ ମରଦନ । ବ୍ରାହ୍ମଣ ବୋଲନ୍ତି ମନେ ନ ପାଞ୍ଚିବ ଭିନ୍ନ ବ୍ରାହ୍ମଣମାନଙ୍କ ମୁହିଁ ଅଟେ ନିଜଦାସୀ । ଶୁଣିଣ ଆନନ୍ଦେ ଚଳିଗଲେ ସବୁ ଦାସୀ ॥ ଦାସୀମାନେ କହୁଛନ୍ତି ସୁବେଶ ଗୋସାଇଁ । ସ୍ନାନକର ବେଗେ ଅଙ୍ଗ ମର୍ଦ୍ଦନ ହୋଇ ॥ ତହୁଁ ସୁବାସଜଳରେ ଦୁହେଁ ସ୍ନାନ କଲେ । ଅଙ୍ଗ ପୋଛିବାକୁ ଗାମୁଛା ଦାସୀ ଦେଲେ ॥ ପିନ୍ଧିବାକୁ ପିତାମ୍ବର ପାଟ ଆଣି ଦେଲେ । ସୁବେଶ ହୋଇଣ ଦୁହିଁଭାଇ ଯେ ବସିଲେ ॥ ବଳରାମ କହୁଛନ୍ତି ଶ୍ରୀଚିତରେ କହ୍ନାଇ । ଏମନ୍ତ ପ୍ରକାରେ ମାନ୍ୟ କରେ କିସପାଇଁ ॥ ଏହାଘରେ ପୁରୁଷ ଜଣେ ଦିଶୁନାହିଁ । ଶୂଳଦେବା ପ୍ରାୟେ ଏହି ବର୍ତ୍ତନ ଦିଶଇ ॥ ଚାଲ ଏବେ ଏହିଠାରୁ ପଳାଇଣ ଯିବା । ଷଣ୍ଢଭିତରେ ଆଉ ପ୍ରାଣ ନ ପାଇବା । ଜଗନ୍ନାଥ କହୁଛନ୍ତି ଚୈତ୍ୟପୁଜାଇ ଶୁଣ । ଏ ଘରର କର୍ତ୍ତ୍ରୀ ଅଛି ହୋଇବେ ଆପଣ ॥ ବଳରାମ କହୁଛନ୍ତି ଶୁଣିରେ କହ୍ନାଇ, ଏମନ୍ତ କହିବା ତୋରଉଚିତ ନୁହଇ ॥ ଗୃହ ପରସ୍ତାର ଦେବୀ ସ୍ୱହସ୍ତରେ କଲେ । ଗନ୍ଧ ତେଜ ରନ୍ଧନ ମାଏ ତା ପକାଇଲେ ॥ ସୁବର୍ଣ୍ଣର ଥାଳ ସୁବର୍ଣ୍ଣର ଗିନାହିଁରେ । ଧାଡ଼ିଥୁଆ ପାତ

ଧୂଆ ସୁସଜ୍ଜିତ କର ॥ ମଣୋହି କରିବାକୁଧି ଯେମନ୍ତ ଭୂଷଣ । ସୁବର୍ଣ୍ଣରେ ପିଢା ତହିଁ କଲେକ ନିର୍ମାଣ ॥ ମହାଲକ୍ଷ୍ମୀ କହୁଛନ୍ତି ଦାସୀମୁଖ ଚୁହିଁ, ବେଗ ଭରି ପ୍ରଭୁଙ୍କୁ ଲେ ଘେନିଅସିଯାଇ ॥ ଏହାଶୁଣି ଦାସୀମାନେ ଶୀଘ୍ରଚଳିଗଲେ ବ୍ରାହ୍ମଣଙ୍କ ପାଶେ ଯାଇ ପ୍ରବେଶ ହୋଇଲେ ॥ ବିନମ୍ବରେ କହୁଛନ୍ତି ବ୍ରାହ୍ମଣ ଗୋସାଇଁ । ଭୋଜନ କରିବଗୁଲ ସ୍ଥାନଅଛି ହୋଇ ॥ ବଳରାମ ବୋଲୁଛନ୍ତି ଶୁଣରେ କହୁଥାଇ । ନାରୀଏ ଜଣେ ପୁରୁଷ ଏଥି କେହି ନାହିଁ ॥ ଭିତରକୁ ଯିବା ଆମ୍ଭ ଉଚିତ ନୁହଇ ॥ ପଦ ଦୁଇଖଣ୍ଡ ତୁମ୍ଭେଆଣ ବେଗଯାଇ ॥ ଜଗନ୍ନାଥ କହୁନନ୍ତି ଶୁଣଭାଇ ତୁମ୍ଭେ । ଏ ଘରର କର୍ତ୍ତା ଅଛ ହୋଇବାକ ଅମ୍ଭେ ତୁମ୍ଭେକିମ୍ପା ଭୟ କରୁଅଛ ଜ୍ୟେଷ୍ଠଭାଇ । ଦାଣ୍ଡ ଦେଖିଅଛୁ ଅମ୍ଭେ ଛାଡ଼ିବା କିମ୍ପାଇ ॥ ଭୟେ ବଳରାମ ସେଠାରୁ ନ ଉଠନ୍ତି । ହସ୍ତଧରି ଘେନିଗଲେ କମଳାଙ୍କ ପତି ॥ ଠାବସଞ୍ଚାରେ ବଳରାମ ନ ବସନ୍ତି । ହସ୍ତ ଧରି ବସାଇଲେ ଦେବଶିରୀପତି । କମଳା କହୁଛନ୍ତି ତୁଳସୀବ୍ରାହ୍ମଣୀ । ଦେଢ଼ସୁର ମୋର ଯେ ଅଟନ୍ତି ହଳପାଣି ॥ ତାହାଙ୍କୁ ଯେମନ୍ତ ଅନ୍ନ ମୁହିଁ ଦେବି ନେଇ ॥ ଭିତରେ ଥାଇଣ ମୁହିଁ ଦେବଇଁ ବଢାଇ ॥ ବଡସାନ ବୋଲି ଅଗ ପଗୁ-ଛିବୁ ଯାଇ । ବଡ଼ଠାରେ ଅଗଅନ୍ନ ଘରଣିବୁ ତୁହି ॥ ଅନ୍ନଥାଳି ଘେନିକରି ବ୍ରାହ୍ମଣୀ ଅଇଲ । ବଡ଼ସାନ କେଉଁ ପଣ୍ଡା ବୋଲି ପଚୁରିଲ ॥ ବଳରାମ କହୁଛନ୍ତି ହୋଇଲୁକି କାଣ୍ଡୀ । ବଡସାନ କିଏ ତତେ ନ ଦିଶଇ ପୁଣି ॥ ଅମ୍ଭେ ବଡ ବୋଲିଣ ଯେ ବଳରାମ ଛନ୍ତି । ବ୍ରାହ୍ମଣୀ ବୋଇଲେ କୋଟି କଲି କା ଗୋସାଇଁ ॥ ପ୍ରଥମ ଥାଳିରେ ଅନ୍ନ ବଳଙ୍କୁ ଦେଲ । ଭିତରକୁ ଫେରି ଅନ୍ନ ଅଣିବାକୁ ଗଲ ॥ ଅଉ ଏକଥାଳି ଅନ୍ନ ଆଣିଲ ବେଳକୁ । ଗୁରୁ ଗ୍ରାସରେ ଖାଇଲେ ବଳରାମଙ୍କୁ ॥ ଅନ୍ନଥାଳି ଘେନିକରି ବ୍ରାହ୍ମଣୀ ଅଇଲ । ଏପଣ୍ଡାଙ୍କ ଅନ୍ନଯାକ କିଏ ଘେନିଗଲ ॥ ବଳରାମ କହୁଛନ୍ତି ଖ୍ୟାତିହୋଇଲ, ଅଗକରି ଗୁରୁଗ୍ରାସ ବେଗେ ଖାଇଦେଲୁ ॥ ହସିଣ ବ୍ରାହ୍ମଣୀ ଦୁଇ ଭାଇଙ୍କି ଅନାଇ । କୁନ୍ତ ମାରିବାପ୍ରାୟେ ଦିଶୁଛ ଗୋସାଇଁ । ପୁଣ ଭାଇଯାକ ତୁମ୍ଭ ଦୁହିଙ୍କର ନାହିଁ । ପେଟଲାଗି ବୁଲୁଅଛ ଦେଶ ୨ ହୋଇ ॥ ସହସ୍ର ଗାନ୍ଧୀ କଦଳୀ ରଖିଦେଲେ ନେଇ । ଷାଠିଏ ଉଢ ପଣା ଦେଇଦେଲେ ଥୋଇ ॥ ଟେଙ୍ଗ

ପରି ପ୍ରଭୁଙ୍କର ମନକୁ ରୁଚଇ । ସେହିପରି କମଳାସୀ ଦଅନ୍ତି ପଠାଇ ॥ ଭୋଜନ ଶେଷ କ୍ରୀ ତେଜ ବୋଲନ୍ତି ବଳରାମ । ଲକ୍ଷ୍ମୀଙ୍କ ରନ୍ଧଣା ପରି ଲାଗୁଛି ଉତ୍ତମ ॥ ଜଗନ୍ନାଥ କହୁଛନ୍ତି ବଳରାମ ଭାଇ । ଲକ୍ଷ୍ମୀପରି ଭାର୍ଯ୍ୟାକୁ ପାଇବ ଆଉ କାହିଁ ॥ ଲକ୍ଷ୍ମୀଙ୍କୁ ଭର୍ତ୍ସନା କରି ଦେଲୁ ଘଉଡାଇ । ବାହାର କଲେ ସେ ତାଙ୍କ ଇଚ୍ଛାଦେଲା ଯହିଁ ॥ ଏମନ୍ତସମୟେ ପୋଡ଼ାପିଠା ଦେଲେ ନେଇ ଜଗନ୍ନାଥ କହୁଛନ୍ତି ବଳରାମ ଭାଇ ॥ ମୋର ମନକଥାକୁ ଯେ ଲକ୍ଷ୍ମୀ ଜାଣି ଥାଇ । ଭୋଜନ ଶେଷରେ ପୋଡାପିଠା ଏ ଦଅଇ ॥ ଭୋଜନ ସାଙ୍ଗ ପ୍ରଭୁ ଅଚମନ କଲେ । କର୍ପୁର ତମ୍ବୁଳ ଦୁଇଭାଇ ଯେ ଭୁଞ୍ଜିଲେ ॥ ବାହାର ମେଲାରେ ପ୍ରଭୁ ବରେଜ କଲେ ଯାଇ । ଗବାକ୍ଷମାର୍ଗରେ ଲକ୍ଷ୍ମୀ ଅଛନ୍ତି ଅନାଇ ପଟୁର ୨ ଦାସୀ ପଟୁର ନେଲ ଯାଇ । ବଧୂ ହୋଇ ଅଛନ୍ତି କ ପଣ୍ଡା ଦୁଇ ଭାଇ ॥ ଏହାଶୁଣି ଦାସୀମାନେ ବେଗେ ଚଳିଗଲେ । ବ୍ରାହ୍ମଣଙ୍କ ନିକଟରେ ପ୍ରବେଶ ହୋଇଲେ ॥ ପୁବ ଭଣ୍ଡ଼ପ ଅଛୁ କି ନାହିଁ ତୁମ୍ଭ ଘର । କେଉଁ ରାଜ୍ୟେ ବାଡ଼ିବୃତ୍ତି ଶାସନ ତୁମ୍ଭର ॥ ଜଗନ୍ନାଥ କହୁଛନ୍ତି ଶୁଣ ଦାସୀତୁହେ, ବଡାହି ହେବାକୁ ଦ୍ରବ୍ୟ ଅମ୍ଭରତ ନାହିଁ ଗୃଅବାଡ଼ ଶାସନ ପାଇବୁ ଅନ୍ୟେ କାହିଁ । ଲକ୍ଷ୍ମୀପରି ଭାର୍ଯ୍ୟାକୁ ଦେଲୁ ଘଉଡାଇ ॥ କପାଳମନ୍ଦ ଅମ୍ଭର ଦୁଇ ଭାଇ ବୁଲୁ । ଲକ୍ଷ୍ମୀ ଘଉଡ଼ାଇ ଆମ୍ଭେ ଏ ଦୁଃଖ ପାଇଲୁ । ଦାସୀଏବଇଲେ ପଣ୍ଡା ହୋଇଲ କି ବାଇ । ନାରୀକ ଛଡ଼ାଇ ପୁଂଶ୍ଚ ଦରିଦ୍ର ହୋଇ ॥ ଗୋସାଇଁ ବୋଲନ୍ତି ଅମ୍ଭେ କହୁଅଛୁ ଶୁଣ । କେଉଁ ନାରୀ ଥିଲେହୁଁ ଐଶ୍ୱର୍ଯ୍ୟ ବର୍ଦ୍ଧନ ॥ କେଉଁ ନାରୀ ଦ୍ୱାରା ବଂଶ ନିପାତ ହୁଅଇ । କେଉଁ ନାରୀ ଥିଲେ ବାପିପେଜ ନ ମିଳଇ ॥ କେଉ ନାରୀଥିଲେ ଖାଡୀ ସୁନାକଲି ପାଇ, କେଉଁ ନାରୀ ଅଲକ୍ଷଣୀ ଗୃହକୁ ଭାଙ୍ଗଇ ॥ ତୁମ୍ଭ ସାମନ୍ତାଣୀଙ୍କି ଗୋ ପଚରନିଯାଇ ଦାସୀମାନେ ବାହୁଲକ ହୋଇଲୁ ଗୋସାଇଁ ॥ କ୍ଷୁଧା ଲାଗୁଥିଲ ଏବେ ଭାତ ଖାଇଲୁ । ଅମ୍ଭ ସାମନ୍ତାଣୀଙ୍କି ପଚାରି ଦୋଇଲ ॥ ବଳରାମ ବଇଲେ ଏ ମୋର ପିଲାଭାଇ । ତୁମ୍ଭ ସାମନ୍ତାଣୀ ଅଟେ ଜଣାଇବ ନାହିଁ । ଜଗନ୍ନାଥ କହୁନ୍ତି ଉପ୍ତ କାହିଁ ପାଇଁ । କିଛି ନ ଚହୁର ଅଟେ ବଳରାମଭାଇ ॥ ଲକ୍ଷ୍ମୀଙ୍କର ଗୃହସିନ ଅଟଇ ଯେ ଏହି । ଏଠାରେ ଅପଣା ଉପୁକାର କାହିଁ

ପାଇଁ ॥ ବଳରାମ କହୁଛନ୍ତି ବାବୁ ଚକ୍ରଧର । ତୁମ୍ଭେ ପାର ହସ୍ତଧର ମହାଲକ୍ଷ୍ମୀଙ୍କର ॥ ଆମ୍ଭେ ଦୋଷକଲୁ ବୋଲି କହ ତାଙ୍କୁ ପାଇ । ଯହୁଁ ଇନ୍ଦ୍ର ତହୁଁ ଥାଅ ଆମ୍ଭ ମନାନାହୁଁ ॥ ଯେତେବେଳେ ବଳରାମ ଏମନ୍ତ କହିଲେ । ଭିତର ପୁରକୁ ପ୍ରଭୁ ନିଜେ ବିଜେ କଲେ ॥ ଧୀରେ ୨ ଭିତରକୁ ଗଲେ ପୀତବାସ ପ୍ରବେଶ ହୋଇଲେ ଯାଇ କମଳାଙ୍କ ପାଶ ॥ ପାଣିଝରି ଘେନି କମଳା ଅଇଲ ଧାଇଁ ଧାଇଁ ପ୍ରଭୁଙ୍କର ମୁଖକୁ ଗୁହିଁଲେ ॥ ଅତି ଆନନ୍ଦେ ପଦପଦ୍ମ ଧୋଇ ଦେଲେ । ଯୋଡ଼ାଏ ପାଦଦୋଳ ମସ୍ତକେ ଲଗାଇଲେ ॥ କିଛି ପାଦୋଦକ ଲକ୍ଷ୍ମୀ ଗର୍ଭକୁ କ୍ଷେପିଲେ । ପଞ୍ଚବର୍ଣ୍ଣ ପୁଷ୍ପେ ପାଦପଦ୍ମ ପୂଜା କଲେ ॥ ମହାଲକ୍ଷ୍ମୀ କହୁଛନ୍ତି ପ୍ରଭୁଙ୍କୁ ଅନାଇ । ଚଣ୍ଡାଳୁଣୀ ବୋଲି ମୋତେ ଦେଲ ଘଉଡ଼ାଇ ॥ ଚଣ୍ଡାଳୁଣୀ ଘରେ ଏବେ ଭୁଞ୍ଜିଲ ଗୋସାଇଁ । ଚଣ୍ଡାଳ ବାଟୁଳ ହେଲ ଦୁଇଗୋଟି ଭାଇ ॥ ଧିକ ତୁମ୍ଭ ବଡ଼ପଣ ଧିକ ତୁମ୍ଭ କଥା । ଯୋଡ଼ ତୁମ୍ଭର ପ୍ରତିଜ୍ଞା ଧିକ ତୁମ୍ଭ ଭ୍ରାତା ॥ ମହାଲକ୍ଷ୍ମୀ ଏପ୍ରକାରେ କେତେ ଧିକାରିଲେ ଜାଳସ୍ଫୁଲିଙ୍ଗ ଶୁଣି କିଛି ନ କହିଲେ ॥ ମହାମାଇ ବଇଲେ ହେ ଶୁଣ ମୋ ବଚନ—ମୋତେ କୃପାକରି ତୁମ୍ଭେ କହ ହେ ବଚନ ॥ କିଛି କ୍ଷଣ ଉତ୍ତାରେ କହିଲେ ଜଗନ୍ନାଥ । ଏବେ ମନୁ ମାନିଲେ ଜଗତର ମତ ॥ ଅହଙ୍କାରେ ଏତେକଥା ହେଲା ପ୍ରାଣସଖୀ । ଅମ୍ଭର ପ୍ରାର୍ଥନା ଏହିସବୁ ଶିଖାପାଇଁ । ବଡ଼ ହେଲେ କାହା ହେଲା ଗର୍ବ ବଳିଲା, ଉଭଭେଲେ ସବୁ ସ୍ଥାନେ ସୁଯଶ ରଖିଲ ॥ ତୁମ୍ଭଯୋଗୁ ଅମ୍ଭେ କଷ୍ଟ ପାଇଲୁ ବହୁତ । ଆମ୍ଭେ ଭିକ୍ଷା ମାଗିବାର ଦେଖିଲେ ଜଗତ ॥ ତୁମ୍ଭ-ଶ୍ରଦ୍ଧାବୃତ୍ତି ଏବେ ଜାଣେ ତ ହେଲା । ଅମ୍ଭଙ୍କୁ ଅନ୍ନ ଦେବା ଲାଗି କହୁଛି ଶୁଭ । ଗୁରୁବାର ଦିନ ଯେ ଏ ପୁରାଣ ଶୁଣିବ । ଜନ୍ମଜନ୍ମାନ୍ତର ପାପ ତାର ଖଣ୍ଡିବ ॥ ଲକ୍ଷ୍ମୀପୂଜା ଦିନ ଏହା ଯେ ନାରୀ ଗାଇବ, ଇହ ଜନ୍ମେ ପତିବ୍ରତା ବୋଲି ଗଣିବ । ଏହାକେ ବହି ନାରୀଙ୍କ ମୁଖେ ଶୁଣାଇବ, ତାହାର ସୁଫଳ ଅବ କେତେକ ପାଇବ ॥ ଏତେକହି ଗୋସାଇଁ ଧଇଲେ ଲକ୍ଷ୍ମୀହସ୍ତ ଜଗତମାତା ବଇଲେ ତୁମ୍ଭେ କରସତ୍ୟ ॥ ଚଣ୍ଡାଳ ବ୍ରାହ୍ମଣ ଯାଏ ଏକ ଥାଳେ ଖାଇ ହେବେ । ସମସ୍ତେ ଖାଇଣ ହସ୍ତ ଜଳେ ନ ଧୋଇବେ ॥ ହାଡ଼ି ହସ୍ତୁ ବ୍ରାହ୍ମଣେ ଛଡ଼ାଇ ଖାଇବେ । ବ୍ରାହ୍ମଣ ଖାଇ ହସ୍ତକୁ ମୁଣ୍ଡରେ ପୋଛିବେ ॥

ଅନ୍ନଖାଇ ସର୍ବେ ମୁଣ୍ଡେ ପୋଛୁଥିବେ ହସ୍ତ । ତେବେ ବଡଦେଉଳକୁ ଚିହ୍ନି ଜଗନ୍ନାଥ । ହେଉ ୨ ବୋଲି ଆଜ୍ଞା ଦେଲେ ମହାବାହୁ । ଯୁଗେଯୁଗେ ଲକ୍ଷ୍ମୀ ଗୋ ତୁମ୍ଭର ଯଶ ରହୁ ॥ ଲକ୍ଷ୍ମୀଙ୍କର ହସ୍ତ ଧରି ଜଗନ୍ନାଥ ନେଲେ । ବଡ଼ ଦେଉଳକୁ ପ୍ରଭୁ ବିଜେକରି ଗଲେ ॥ ଲକ୍ଷେ ଚନ୍ଦ୍ର ଉଦୟ ଯେ ଘୁମୁରେ ଜଳଇ । ଦେଉଳରୁ ବିଜେକଲେ ବ୍ରହ୍ମାଣ୍ଡ ଗୋସାଇଁ ॥ ଇନ୍ଦ୍ର ଡ଼ାକୁଛନ୍ତି ଦେବ ମହିମା ମହିମା । ବ୍ରହ୍ମା ଡାକୁଛନ୍ତି ଦେବ ଗୁହାରି ଶୁଣିବା ॥ ବରୁଣ କୁବେର ଯେ ହସ୍ତରେ ବେତଧରି । ନୃତ୍ୟ କରୁଥିବେଇ ତହିଁ ସ୍ୱର୍ଗଅପସରି ॥ ରମ୍ଭା ଯେ ମେନକା ଅବା ଆଉ ଚିତ୍ରରେଖା । ତୁଳସୀ ମାଳତୀ ଆଉ ଅନ୍ୟାନ୍ୟ ରସିକା ॥ ତଥିଲା ଯେ ମଦାଳସା ଅବର ଶୁଶୀଳା । ନୃତ୍ୟ କରନ୍ତି ହୃଷ୍ଟ ହୋଇଣ ଅବଳା ॥ ବଳରାମ କହୁଛନ୍ତି ଶୁଣରେ କହ୍ନାଇ । ଘରକୁ ଘରଣୀ ଚିନା ସୁନ୍ଦର ଦିଶଇ ॥ ଯେତେବେଳେ ଦାଣ୍ଡେ ଯାଉଥିଲେ ଦୁଇ ଭାଇ । ଗୃହର ଘଣ୍ଟ ବୋଲି ଦେଉଥିଲେ ଘଉଡ଼ାଇ ॥ ଅହୁରି କଥାଏ ଶୁଣ ଜଗନ୍ନାଥ ଭାଇ । ଲକ୍ଷ୍ମୀ ଏତେବଡ଼ ବୋଲି ଏବେ ଜାଣିଲଇଁ ॥ ଲକ୍ଷ୍ମୀଦେବୀ ବିଜେକଲେ ତାଙ୍କ ଦେଉଳକୁ । ଦୁଇଭାଇ ବିଜେକଲେ ବଡ଼ଦେଉଳକୁ ॥ ଦାସୀ ପରିବାରି ଯେ ପରଛୁ ପେଟେଥିଲେ । ଲକ୍ଷ୍ମୀ ଅଇଲାକୁ ନେଇ ସଙ୍ଗତେ ଅଇଲେ ॥ ଲକ୍ଷ୍ମୀଙ୍କି ପାଇଣ ଦେବ ଗୋବିନ୍ଦ ଆନନ୍ଦ । ସଂସାରରେ ବସନ୍ତମତେ କଲେକ ମୁକୁନ୍ଦ ॥ ଶୁଣିଲ ନାରଦ ଏହି ପୁରାତନ ଆଖ୍ୟା । ଯହାନ ବ୍ରତନେ ପ୍ରଭୁ ମାଗିଲେ ଯେ ଭିକ୍ଷା । ଘର ଚଣ୍ଡାଳୁଣୀ ଅଞ୍ଜୁଳି ଭୋଗ କଲ । ଲକ୍ଷ୍ମୀଙ୍କ ସୁଦମ୍ଭାନୁ ଯେ ଏମନ୍ତ ହୋଇଲା ॥ ଏ ପୁରାଣ ଶୁଣଲେ ଯେ ସର୍ବସିଦ୍ଧ ହୁଏ, ସୂର୍ଯ୍ୟୋଦୟେ ତମସମ ପାପ କ୍ଷୟ ଯାଏ ॥ ଏପୁରାଣ ଯେଉଁମାନେ ପଢନ୍ତି ଶୁଣନ୍ତି । ଲକ୍ଷକୋଟି ଗୋ ଦାନର ଫଳ ସେ ଲଭନ୍ତି ॥ ଏ ପୁରାଣ ଅଟଇ ଯେ ମୁକତିର ପଥ । ଏହାଫଳ କଥନରେ କେ ହେବ ସାମର୍ଥ ॥ ଲକ୍ଷ୍ମୀଙ୍କ ପୁରାଣ ଏହୁ ସମ୍ପୂର୍ଣ୍ଣ ହୋଇଲା । ଭଣେ ବଳରାମ ଦାସ ଗୀତରେ କହିଲା ॥



ସମାପ୍ତ

ବ୍ରହ୍ମପୁର ପୂର୍ଣ୍ଣଚନ୍ଦ୍ର ପ୍ରେସରେ ଶ୍ରୀ ବୃନ୍ଦାବନ ଦାସଙ୍କ ଦ୍ୱାରା ମୁଦ୍ରିତ

# ଶ୍ରୀ ମହାଲକ୍ଷ୍ମୀ ପୂଜା

ଗନ୍ଧମନ୍ତ୍ରଃ—ଶ୍ରୀଖଣ୍ଡଚନ୍ଦନଂ ଦିବ୍ୟଂ ଗନ୍ଧାଢ୍ୟଂ ସୁମନୋହରଂ ।
ଲେପନାର୍ଥେ ମୟା ଦତ୍ତଂ ପ୍ରିତୟେ ପ୍ରତିଗୃହ୍ୟତାଂ
ଶ୍ରୀ ମହାଲକ୍ଷ୍ମୀ ଦେବ୍ୟୈ ଚନ୍ଦନଂ ସମର୍ପୟାମି ॥

ପୁଷ୍ପମନ୍ତ୍ର – ନାନାବାଗାନ ପୁଷ୍ପାଣି ନାନାଗନ୍ଧ ଯୁକ୍ତାନି ଚ
ନାନାବର୍ଣ୍ଣାନ୍ୟା ହୃତାନି ଶୋଭାର୍ଥଂ ପ୍ରତିଗୃହ୍ୟତାଂ
ଶ୍ରୀ ମହାଲକ୍ଷ୍ମୀଦେବ୍ୟୈ ପୁଷ୍ପାଣି ସମର୍ପୟାମି ॥

ଧୂପମନ୍ତ୍ରଃ — ବନସ୍ପତିରସୋଦ୍ଭୁତୋ ଗନ୍ଧାଢ୍ୟଃ ସୁମନୋହରଃ
ଆଘ୍ରେୟଃ ଲକ୍ଷ୍ମୀଦେବାନାଂ ଧୂପୋଽୟଂ ପ୍ରତିଗୃହ୍ୟତାଂ

ଦୀପମନ୍ତ୍ରଃ—ସାଜ୍ୟଂ ଚ ବର୍ତ୍ତିସଂଯୁକ୍ତଂ ବହ୍ନି ତୈଲକ୍ୟତମିରାପହଂ ।
ବହ୍ନିନା ଯୋଜିତଂ ଦୀପଂ ଗୃହାଣ ଜାହ୍ନମଂଗଳା ।
ଶ୍ରୀ ମହାଲକ୍ଷ୍ମୀଦେବ୍ୟୈ ଏଷ ଦୀପଃ ସ୍ୱାହା ॥

ନୈବେଦ୍ୟମନ୍ତ୍ରଃ — ଶର୍କରାଖଣ୍ଡସଂଯୁକ୍ତଂ ଦଧିକ୍ଷୀରଂ ଘୃତାନ୍ୱିତଂ ।
ଲେହ୍ୟଚୋଷ୍ୟଂ ଭକ୍ଷ୍ୟଭୋଜ୍ୟଂ ନୈବେଦ୍ୟଂ ପ୍ରତିଗୃହ୍ୟତାଂ ।
ଶ୍ରୀ ମହାଲକ୍ଷ୍ମୀଦେବ୍ୟୈ ଏଷ ନୈବେଦ୍ୟ ସ୍ୱାହା ॥

—ଲକ୍ଷ୍ମୀଙ୍କୁ ପୁଷ୍ପାଞ୍ଜଳି ଦେବା ମନ୍ତ୍ର—

ନମସ୍ତେ ସର୍ବଦେବାନାଂ ବରଦାସି ହରିପ୍ରିୟେ
ଯା ଗତିସ୍ତ୍ୱତ୍ପ୍ରପନ୍ନାନାଂ ସା ମେ ଭୂୟାତ୍ତ୍ୱଦର୍ଚ୍ଚନାତ୍
ଇତ୍ୟନେନ ପୁଷ୍ପାଞ୍ଜଳିତ୍ରୟଂ ଦଦ୍ୟାତ୍ ।

---ଲକ୍ଷ୍ମୀଙ୍କର ପ୍ରଣାମମନ୍ତ୍ର—

ବିଶ୍ୱରୂପସ୍ୟ ଭାର୍ଯ୍ୟାସି ପଦ୍ମେ ପଦ୍ମାଳୟେ ଶୁଭେ ।
ସର୍ବତଃ ପାହି ମାଂ ଦେବୀ ମହାଲକ୍ଷ୍ମୀ ନମୋସ୍ତୁତେ ।
ଇତି ଶ୍ରୀ ବିଷ୍ଣୁସାରତନ୍ତ୍ରେ ଲକ୍ଷ୍ମୀକବଚଂ ସମାପ୍ତଂ ॥





# ଲକ୍ଷ୍ମୀ ପୁରାଣ

ମୂଲ୍ୟ ପାଞ୍ଚ ଅଣା

ପ୍ରାପ୍ତିସ୍ଥାନ

ପୂର୍ଣ୍ଣଚନ୍ଦ୍ର ପୁସ୍ତକାଳୟ
ବାରକାସ୍ ଷ୍ଟ୍ରୀଟ୍
ପୋ: ବ୍ରହ୍ମପୁର, ଗଞ୍ଜାମ

